ପ୍ରାଣୀ ପ୍ରଜନନ ତତ୍ତ୍ୱ

# ମିଳନର ଛନ୍ଦ

ସୌମେନ୍ଦ୍ର ଘୋଷ



# ମିଳନର ଛନ୍ଦ

## ପ୍ରାଣୀମାନଙ୍କ ଯୌନ ଜୀବନ

ଡକ୍ଟର ସୌମେନ୍ଦ୍ର ଘୋଷ



ପାଇଡ୍ ବୁକ୍ସ

# ମିଳନର ଛନ୍ଦ

## ପ୍ରାଣୀମାନଙ୍କ ଯୌନ ଜୀବନ

ଡକ୍ଟର ସୌମେନ୍ଦ୍ର ଘୋଷ

ପ୍ରକାଶକ

ପାଇନ୍ ବୁକ୍ସ୍

ମଧୁସୂଦନ ନଗର, ତୁଳସୀପୁର, କଟକ-୮

ପ୍ରଥମ ମୁଦ୍ରଣ : ୨୦୦୧

**MILANARA CHHANDA**

*by*

**DR. SOUMENDRA GHOSH**

*Published by*

**Pine Books**

Madhusudan Nagar, Tulsipur, Cuttack-8



**Price : Rs. 60 /-**

# ଏଥିରେ ଅଛି

□□

# ଭୂମିକା

ସୂର୍ଯ୍ୟ ପରିବାରରେ ଆମର ଏଇ ଛୋଟ ଗ୍ରହ ପୃଥିବୀ, ଏତେ ସରସ ଓ ସୁନ୍ଦର କାହିଁକି ? ଏ କଥା କହିବା ବାହୁଲ୍ୟ ପୃଥିବୀ ସୁନ୍ଦର କାରଣ ପୃଥିବୀରେ ଜୀବନ ପ୍ରସ୍ଫୁଟିତ ଓ ପଲ୍ଲବିତ । ସୂର୍ଯ୍ୟଙ୍କ ଠାରୁ ଅଲଗା ହୋଇ ପୃଥିବୀ ଯେବେ ନିଜର ସ୍ୱତନ୍ତ୍ର ଅସ୍ତିତ୍ୱ ନେଇ ବଞ୍ଚିବା ଆରମ୍ଭ କଲା, ତା'ର ସେଇ ପ୍ରଥମ ଦିନଗୁଡ଼ାକ ସୁଖର ନଥିଲା । ସେଦିନ ପୃଥିବୀ ବକ୍ଷରେ ଲାଗିରହିଥିଲା ଅସ୍ଥିରତା । ଅନେକ ଭଙ୍ଗା ଗଢ଼ା ପରେ ଦିନେ ସମସ୍ତ ଅସ୍ଥିରତା ଶାନ୍ତ ହେଲା । ମହାସମୁଦ୍ରରେ ଭାସି ଉଠିଲା ପ୍ରଥମ ଜୀବକୋଷଟିଏ । ସୃଷ୍ଟିକର୍ତ୍ତାଙ୍କ ପ୍ରଥମ ସଫଳତା । ମନରେ ପ୍ରଶ୍ନ ହୁଏ ସେଦିନ କ'ଣ ଈଶ୍ୱର ଜାଣିଥିଲେ ଅଢ଼େଇଶହ କୋଟି ବର୍ଷ ପରେ ମଣିଷ ନାମକ ଜୀବଟିଏ ଆସିବ । ଯେ ନିଜକୁ ଈଶ୍ୱରଙ୍କ ମାନସ ପୁତ୍ର ବୋଲେଇବ ।

ସୃଷ୍ଟିପରେ ଈଶ୍ୱରଙ୍କ ମନରେ ସୁଖ ନଥିଲା, ଆନନ୍ଦ ନଥିଲା କାରଣ ସେ ଏକାକୀବୋଧ କରୁଥିଲେ । ପ୍ରଥମ ଜୀବକୋଷଟି ବଞ୍ଚିଲା, ବଂଶବୃଦ୍ଧି କଲା ନିଜ ଶରୀରର ଖଣ୍ଡିତ ଅଂଶରୁ । ଜୀବନ ଚାଲିଥିଲା ରସହୀନ, ବୈଚିତ୍ର୍ୟହୀନ ପୁନଃପୌନିକତାରେ । ଯଦି ସେହିପରି ଚାଲନ୍ତା ତେବେ ପୃଥିବୀରେ ଜନ୍ମ ନିଅନ୍ତା ଏକ ବିରାଟ ମାଂସପିଣ୍ଡ । ମାତ୍ର ତାହା ହେବାର ନୁହେଁ କାରଣ ସୃଷ୍ଟିକର୍ତ୍ତା ନିଜେ ଆନନ୍ଦମୟ, ରସଘନ ତାଙ୍କ ସୃଷ୍ଟିରେ ନିରାନନ୍ଦ ଆସିବ କେଉଁଠୁ ? ଆନନ୍ଦ ପାଇଁ ସେ ନିଜକୁ ଦୁଇ ଭାଗରେ ବିଭକ୍ତ କଲେ- ''ପ୍ରକୃତି ଓ ପୁରୁଷ'', ''ଶିବ ଓ ଶକ୍ତି'' । ଏକ ଅନ୍ୟର ପରିପୂରକ, ଏକ ବିନା ଅନ୍ୟ ନିରର୍ଥକ । ଯେପରି ଅଗ୍ନି ଓ ତା'ର ଦାହିକା ଶକ୍ତିକୁ, ଶବ୍ଦ ଓ ତା'ର ଅର୍ଥକୁ ଏକ ଠାରୁ ଅନ୍ୟକୁ ଅଲଗା କରି ହୁଏ ନାହିଁ, ସେହିପରି ପ୍ରକୃତି ଓ ପୁରୁଷକୁ ଅଲଗା କରି ହୁଏ ନାହିଁ । କେବଳ ପୁରୁଷ ବା କେବଳ ନାରୀ ସୃଷ୍ଟିର ଏକ ଅର୍ଦ୍ଧାଂଶ ମାତ୍ର ।

ଆଜି ପୃଥିବୀ ପୃଷ୍ଠରେ ଜୀବନର ଯେଉଁ ସମାରୋହ, ଯେଉଁ ବୈଚିତ୍ର୍ୟ ସମ୍ଭବ ହୋଇଛି, ତାହା ସମସ୍ତ ନିର୍ଭର କରିଛି ପ୍ରକୃତି ଓ ପୁରୁଷର ମିଳନରୁ । ଆନନ୍ଦଲାଗି ବିଧାତା ପୁରୁଷ ଏକରୁ ଦୁଇ ହେଲେ, ମାତ୍ର ଛିନ୍ନ ଦୁଇ ଭାଗର ପରସ୍ପର ପ୍ରତି ଆକର୍ଷଣ, ମିଳନ ଲାଗି ଅଦମ୍ୟ ଇଚ୍ଛାହିଁ ସୃଷ୍ଟିର ଧାରାଟିକୁ ଅକ୍ଷୁର୍ଣ୍ଣ ରଖିଲା ।

ପୃଥିବୀରେ ଜୀବନ ସୃଷ୍ଟି ଯଦି ପ୍ରକୃତିର ସବୁଠାରୁ ସଫଳତମ ପରୀକ୍ଷା ହୁଏ, ତେବେ ସେଇ ଜୀବନର ସମ୍ପୂର୍ଣ୍ଣ ପ୍ରକାଶ ପାଇଁ ପ୍ରକୃତିର ବିଭିନ୍ନ ପଦକ୍ଷେପମାନ ମଧ୍ୟରୁ ସବୁଠାରୁ ସାହସିକ ପଦକ୍ଷେପ-''ମିଳନରୁ ବଂଶବୃଦ୍ଧି'' । ଏହି ବଂଶବିସ୍ତାର କ୍ଷମତା ହିଁ ପ୍ରାଣୀକୁ ତା'ର କୁଳମର୍ଯ୍ୟାଦା ଦିଏ । ଗଧ ଓ ଘୋଡ଼ାର ମିଳନରୁ ଜାତ ଖଚ୍ଚର, ବଂଶବିସ୍ତାର କ୍ଷମତାରେ ଅପାରଗମ ହେବାରୁ ଏଯାବତ୍ ପ୍ରାଣୀ କୁଳରେ କୌଳିନତା (Species Status) ଲାଭ କରି ନାହିଁ ।

ଯେପରି ପ୍ରତ୍ୟେକ ପ୍ରାଣୀ ଏକ ଅନ୍ୟଠୁ ତା'ର ଶରୀର ଗଠନ ଓ ବ୍ୟବହାରରେ ସ୍ୱତନ୍ତ୍ର, ସେହିପରି ତା'ର ଯୌନ ଜୀବନ ଓ ଯୌନ ପ୍ରକ୍ରିୟାରେ ମଧ ପ୍ରତ୍ୟେକ ପ୍ରାଣୀ ଅନ୍ୟଠାରୁ ସ୍ୱତନ୍ତ୍ର । ଏହି ସ୍ୱାତନ୍ତ୍ରତା ନିମ୍ନ ଶ୍ରେଣୀର ପ୍ରାଣୀମାନଙ୍କ ମଧରେ ଯେତେ ପ୍ରକଟ ଉଚ୍ଚ ବର୍ଗର

ପ୍ରାଣୀମାନଙ୍କଠି ତାର କିୟଦଂଶ ମଧ ଦେଖାଯାଏ ନାହିଁ । ଆଶ୍ଚର୍ଯ୍ୟ ଲାଗେ ଅନେକ କ୍ଷୁଦ୍ର କ୍ଷୁଦ୍ର ପ୍ରାଣୀ ଯେଉଁମାନଙ୍କ ମସ୍ତିଷ ଓ ବୋଧଶକ୍ତି ନିମ୍ନମାନର, ସେମାନେ କିଭଳି ନିଜର ସଙ୍ଗିନୀକୁ ଚିହ୍ନି ପାରୁଛନ୍ତି, କିଭଳି ଭାବରେ ଆଦାନ ପ୍ରଦାନ କରୁଛନ୍ତି ଓ କେଡ଼େ ଆଡ଼ମ୍ବରରେ ଯୌନକ୍ରିୟା ସମ୍ପାଦନ କରୁଛନ୍ତି । ସିଷ୍ଟସୋମା ହିମାଟୋବିୟମ, ଛାତିରେ କୃମି- ମିଳନର ପ୍ରଥମ ଦିନରୁ ହିଁ ପୁରୁଷ ତା'ର ସ୍ତ୍ରୀକୁ ଛାତିରେ ଜାବୁଡ଼ି ଧରେ, ଯେତେ ଦିନ ଯାଏ ସ୍ତ୍ରୀ ଗର୍ଭଧାରଣ କରି ଅଣ୍ଡା ନ ଦେଇଛି । ସ୍ତ୍ରୀ ମହୁମାଛି ଜୀବନରେ ଥରେ ମାତ୍ର ମିଳିତ ହୁଏ । ସେ ମିଳନ ମହୁଫେଣାର ନିର୍ଜନ ଅନ୍ଧାରୁଆ କୋଠରୀରେ ହୁଏ ନାହିଁ । ସେଥିପାଇଁ ରହିଛି ତା'ର ବିରାଟ ଆୟୋଜନ । ଅନେକ ମାଛ ପରସ୍ପରକୁ ଦେଖି ଏତେ ସମ୍ମୋହିତ ହୋଇଯାଆନ୍ତି ଯେ ପୂର୍ବରାଗ ବେଳେ ସେମାନେ ପ୍ରାୟ କୋଡ଼ିଏ ମିନିଟ୍ ପର୍ଯ୍ୟନ୍ତ ପରସ୍ପରକୁ ଚୁମ୍ବନ କରିଥାନ୍ତି ।

ପୂରାକାଳରୁ ଆଜିଯାଏଁ ଯୌନତା ସମ୍ପର୍କୀୟ ଅଲୋଚନାରେ ସଭ୍ୟ ସମାଜ ସ୍ପର୍ଶକାତର । ଭାବିବାକୁ ଅବାକ୍ ଲାଗେ ଉଦ୍ଭିଦ ଜଗତର ଜନନାଙ୍ଗ ଅର୍ଥାତ୍ ଫୁଲ; ଯେଉଁ ମଣିଷକୁ ପବିତ୍ର ଓ ସୂଚିତାର ଭାବ ଦେଉଛି, ଅପର ପକ୍ଷରେ ପ୍ରାଣୀର ଜନନାଙ୍ଗ ବା ତତ୍‌ସମ୍ବନ୍ଧୀୟ ଆଲୋଚନା ସମାଜରେ ନିଷିଦ୍ଧ ଓ ଗୋପନୀୟ । ତଥାପି ସଭ୍ୟତାର କ୍ରମ ବିବର୍ତ୍ତନ ସାଙ୍ଗକୁ ମଣିଷ ଅନୁଭବ କଲାଣି ଯୌନ ପ୍ରକ୍ରିୟା ଏକ କ୍ରିୟା ମାତ୍ର ଏଥିରେ ଅଶ୍ଳୀଳତା ନାହିଁ । ଏହାର ଜ୍ୱଳନ୍ତ ଉଦାହରଣ ଜନ୍ମନିୟନ୍ତ୍ରଣ ଓ ତଦ୍ ସମ୍ବନ୍ଧୀୟ ବିଜ୍ଞାପନ ସମାଜରେ ଏବେ ନୈମିତ୍ତିକ ଘଟଣା । ଅବଶ୍ୟ ଆଜିର ଏ ପରିସ୍ଥିତି ଆସିବା ପାଇଁ ବେଶ୍ କିଛି ବର୍ଷ ଲାଗିଛି । ଦିନକରେ ମଣିଷ ମନର ରୁଦ୍ଧ ଦ୍ୱାର ଖୋଲି ନାହିଁ । ଅନେକ ବୈଜ୍ଞାନିକ, ସମାଜ ବିଜ୍ଞାନୀଙ୍କ ସମବେତ ଚେଷ୍ଟାରେ ଏହି ସଂସ୍କାର ଦୂର ହୋଇ ପାରିଛି ।

''ମିଳନରେ ଅଶ୍ଳୀଳତା ନାହିଁ'' । ଆଜି ଯେତେ ସହଜରେ କଥାଗୁଡ଼ିକ କହି ହେଉଛି, ଏହି କଥା ଆଜିକୁ ପ୍ରାୟ ଦୁଇ ଶହ ବର୍ଷ ତଳେ କ୍ରିଷ୍ଟିଆନ କନରାଡ଼ ସ୍ପ୍ରିନଜେଲ ଯେବେ ତାଙ୍କ ବହି "The Newly Revealed Mystery of Nature in Structure and Fertilization of Flower" (1787)ରେ ପ୍ରକାଶ କଲେ, ଲୋକେ ତାଙ୍କୁ ଏକଘରିଆ କରିଦେଲେ । ସମାଜରେ ସେ ହୋଇଗଲେ ଏକ ନିମ୍ନରୁଚୀର ଲୋକ । ସ୍ପ୍ରିନଜେଲ ଥିଲେ ଏକ ପ୍ରାଇମେରୀ ସ୍କୁଲର ସହକାରୀ ପ୍ରଧାନ ଶିକ୍ଷକ । ତାଙ୍କର ଚାକିରୀଟି ଗଲା । ସ୍ପ୍ରିନଜେଲ ତାଙ୍କର ବହିରେ ଲେଖିଥିଲେ ଫୁଲ ବୃକ୍ଷର ଜନନାଙ୍ଗ, ବୃକ୍ଷ ତା'ର ମିଳନ ଇଚ୍ଛା ଫୁଲ ମାଧମରେ ସମ୍ପାଦନ କରେ, ସେଥିଲାଗି ଫୁଲ ଏଡ଼େ ସୁନ୍ଦର । ଫୁଲର ସୌନ୍ଦର୍ଯ୍ୟ ପବନ, କୀଟପତଙ୍ଗକୁ ଆକର୍ଷଣ କରେ । ଆଜି ଏ ସମସ୍ତ ତଥ୍ୟ ପ୍ରାଇମେରୀ ସ୍କୁଲ ପାଠ୍ୟକ୍ରମରେ ଅନ୍ତର୍ଭୁକ୍ତ, ହେଲେ ଆଜିକୁ ଦୁଇ ଶହ ବର୍ଷ ତଳେ ଲୋକେ ଏ କଥା ସହଜରେ ଗ୍ରହଣ କରିପାରି ନଥିଲେ । ସମାଜରୁ ବିତାଡ଼ିତ ହେବା ପରେ ସ୍ପ୍ରିନଜେଲ କ'ଣ କରିଥିଲେ । ଏକ ରୂଚିହୀନ ବ୍ୟକ୍ତି ଭାବରେ ସେ କ'ଣ ତାଙ୍କ ପରିବାର ଆଖିରେ ଛୋଟ ହୋଇଯାଇଥିଲେ ?

ଏହାର ଶହେ ବର୍ଷ ପରେ ଉଇଲହେଲ୍ମ ବ୍ଲସ ନାମକ ଜଣେ ଲୋକପ୍ରିୟ ବୈଜ୍ଞାନିକ ପ୍ରବନ୍ଧକାର ଭିକ୍ଟୋରୀୟାନ ଯୁଗର ଭାଷା ଓ ଶୈଳୀରେ "Love life in Nature" ପରେ



ଆଣ୍ଟୋନ ଫନ ଲିଉଏନହକ : ସପ୍ତଦଶ ଶତାବ୍ଦୀରେ ପ୍ରଥମ କରି ବ୍ୟାକ୍‌ଟ୍ରିଆ ଦେଖିଥିଲେ



ଚାର୍ଲସ ଡ଼ାରଉଇନ : ବ୍ରିଟିଶ ବୈଜ୍ଞାନିକ ବିବର୍ତ୍ତନବାଦର ଜନକ

"Kaliedo Scope of Love" ନାଁରେ ମିଳନ ସମ୍ବନ୍ଧୀୟ ଦୁଇଟି ବହି ପ୍ରକାଶ କଲେ । ବହି ଦୁଇଟି ଲୋକପ୍ରିୟ ହେଲା ଏବଂ ମିଳନ ସମ୍ବନ୍ଧୀୟ ଅନେକ ଭ୍ରାନ୍ତ ଧାରଣାର ପରିବର୍ତ୍ତନ ଆଣିଲା । ବ୍ଲସଙ୍କ ବହି ଦୁଇଟି ଏକଦା ବେଷ୍ଟସେଲର ସମ୍ମାନ ପାଇଥିଲା । ପରେ ପରେ ଇଉରୋପର ବିଭିନ୍ନ ଭାଷାରେ ଅନୁଦିତ ହୋଇ ବିଭିନ୍ନ ଲାଇବ୍ରେରୀରେ ଶୋଭା ପାଇଲା । ବ୍ଲସଙ୍କ ନିଜ ଭାଷାରେ "there is nothing repellent about the sexual processes, whether they took place in sponge, worms, fish, birds, monkeys or men. These processes were miracles of nature... eternal wonders of generation, eternal miracles of love."

ଆଜି ଆମେ ଯେଉଁମାନେ ଫ୍ରଏଡ଼ (Sigmund Freud) କିନସେଙ୍କ (Alfred C Kinsey) ଯୁଗରେ ଜନ୍ମିଛୁ, ଆମ ପାଇଁ ବ୍ଲସଙ୍କ ଅତି ନାଟକୀୟ ଭାଷା ଅତି ନାଟକୀୟ ପ୍ରକାଶ ଭଙ୍ଗୀ ପଢ଼ିଲେ ମନେ ହୁଏ ଏହା ଅତିରଞ୍ଜିତ । କାରଣ ଯାହା ହେଉନା କାହିଁକି, ଏହା ପ୍ରତ୍ୟେକ ଅନୁଭବ କରୁଥିବେ, ସଭ୍ୟତା ଯେତେ ପ୍ରାଚୀନ ହେଉଛି, ମଣିଷର ରୁଚୀ ବଦଳୁଛି, ତା'ର ଧ୍ୟାନ-ଧାରଣା, ସାଜ ପୋଷାକ, ଚାଲିଚଳନର ପରିବର୍ତ୍ତନ ହେଉଛି । ପୁରୁଣା ମୂଲ୍ୟବୋଧର ପରିବର୍ତ୍ତନ ହେଉଛି । ସିନେମା, ଟିଭିରେ ଶରୀର ପ୍ରଦର୍ଶନ, ଗୋପନୀୟ ପଣ୍ୟ ବା ଜନ୍ମନିୟନ୍ତ୍ରଣ ସମ୍ବନ୍ଧୀୟ ବିଜ୍ଞାପନ ଦେଖି ଆମେ ଆଉ ଲାଜରେ ମୁହଁ ତଳକୁ କରୁନାହୁଁ । ''ମିଳନରେ ଅଶ୍ଳୀଳତା ନାହିଁ'' ଏ ସ୍ଲୋଗାନ ସହ ଆମର ପରିଚୟ ଏବେ ହେଉଥିଲେ ହେଁ ପାଶ୍ଚାତ ଦେଶମାନଙ୍କରେ ଏହା ଏକ ପୁରୁଣା ବୋଧ; ଯଦିଓ ଏଭଳି ଏକ ବୋଧରେ ବିକୃତି ଅଧିକ ସୌନ୍ଦର୍ଯ୍ୟ କମ ।

ସଭ୍ୟତାର ପ୍ରଥମ ଦିନରୁ ମଣିଷ ଚେଷ୍ଟା କରୁଛି ପ୍ରାକୃତିକ ଶକ୍ତିକୁ ନିଜ ଅକ୍ତିଆରରେ ଆଣିବା ପାଇଁ । ଏହି ଶକ୍ତି ବାହ୍ୟ ଶକ୍ତି ହୋଇପାରେ ବା ତା'ର ନିଜ ଅନ୍ତର୍ନିହିତ ଶକ୍ତି ମଧ ହୋଇପାରେ । ଅନେକ ଶକ୍ତିକୁ ସେ ନିଜ ମନମୁତାବକ ଚଳେଇଲେ ମଧ ସାଧାରଣ ମଣିଷ କାମଶକ୍ତିକୁ ନିଜ ଅକ୍ତିୟାରରେ ଆଣି ପାରେ ନାହିଁ । ସାଧାରଣ ମଣିଷ କ୍ଷୁଧା ଓ କାମ ନିକଟରେ

ପରାଭୂତ । ଏ ଦୁଇ ଶକ୍ତି ନିକଟରେ ମଣିଷ ଓ ପଶୁ ଭିତରେ କୌଣସି ପ୍ରଭେଦ ନାହିଁ । ନିଜର ସମସ୍ତ ବିଦ୍ୟା, ବୁଦ୍ଧି, ବିବେକ ଥାଇ ମଧ୍ୟ ମଣିଷ ବେଳେବେଳେ "more an animal than any brute."

ମଣିଷ ସଭ୍ୟତା ବିବର୍ତ୍ତନରେ ଗୋଟିଏ ବିଷୟ ଲକ୍ଷଣୀୟ ମଣିଷ ଯେତେ ସଭ୍ୟ ହେଉଛି, ତା' ଭିତରେ ଯେତେ ଭଲଗୁଣ (ସାମାଜିକ ଅର୍ଥରେ) ପ୍ରକାଶ ପାଉଛି ଯେପରି ବିଶ୍ୱାସବୋଧ, ମିଥ୍ୟା ପ୍ରତି ଭୟ, ପରିବାର ପ୍ରତି ସମ୍ମାନବୋଧ, ସହନଶୀଳତା ଆଦି ବିକଶିତ ହେଉଛି, ମଣିଷ ତା'ର ନିଜ ସ୍ୱାଭାବିକତା ଠାରୁ ଦୂରେଇ ଯାଉ ନାହିଁ କି ? ଆଧୁନିକ ମଣିଷ ବ୍ୟବହାରରେ କୃତ୍ରିମ ହୋଇଯାଇ ନାହିଁ ? ଇଚ୍ଛା ଥାଇ, ସେ ଇଚ୍ଛାକୁ ଦମନ କରି ସମାଜର ନିୟମ ମାନି ନିଜକୁ ଚାଳିତ କରିବା ସଭ୍ୟ ସମାଜର ଅନ୍ୟତମ ମାନଦଣ୍ଡ । ଆଫ୍ରିକାର ଅସହ୍ୟ ଗରମରେ ଲୋକେ ଦେହର ଉର୍ଦ୍ଧାଂଶକୁ ଉନ୍ମୁକ୍ତ ରଖୁଥିଲେ । ଏବେ ସାମାଜିକ ନିୟମରେ ଧନ୍ଦି ହୋଇ ସେମାନେ ପୋଷାକ ଦ୍ୱାରା (ଇଚ୍ଛା ଥାଉ ବା ନଥାଉ) ନିଜକୁ ଆବୃତ୍ତ ରଖିବାକୁ ବାଧ୍ୟ ହେଉଛନ୍ତି । ମଣିଷ ଯେତେ ସମାଜିକ ଅର୍ଥରେ ସଭ୍ୟ ହେଉଛି ସେତିକି ସେ ପ୍ରକୃତିଠାରୁ ଦୂରେଇ ଯାଉଛି । ତା'ର ସ୍ୱାଭାବିକତା କମି ଯାଉଛି । ଏହି ଅସ୍ୱାଭାବିକ ବ୍ୟବହାର କୃତ୍ରିମତା ତା'ର ଯୌନ ଜୀବନରେ ଆହୁରି ପ୍ରକଟିତ । ଅପର କ୍ଷେତ୍ରରେ ବନ୍ୟପ୍ରାଣୀ ତା'ର ସ୍ୱାଭାବିକ ପ୍ରକୃତି (Natural instinct)ଦ୍ୱାରା ଚାଳିତ । ପ୍ରଣୟୀ ସହ ମିଳନ ଲାଗି ଦ୍ୱନ୍ଦ୍ୱଯୁଦ୍ଧ ବ୍ୟାଘ୍ର କୁଳର ଏକ ପ୍ରଥା । ଏଇ ଲଢ଼େଇରେ କାହାରି ଜୀବନହାନୀ ହେଲେ ମଧ୍ୟ ବ୍ୟାଘ୍ର କୁଳ ସେଥିପାଇଁ ଚିନ୍ତିତ ନୁହେଁ । ଜୀବନଯାପନରେ ଏହି ସ୍ୱାଭାବିକତା ପାଇଁ ପଶୁକୁଳରେ ବିକୃତି(perversion) ନାହିଁ । ଜୀବନର ଦୁଇଟି ସମସ୍ୟା ମିଳନ ଓ ଖାଦ୍ୟ ଆହରଣ ଏହି ଦୁଇ ସମସ୍ୟାର ସମାଧାନ ପାଇଁ ମଣିଷକୁ ଛାଡ଼ି ଦେଲେ ଅନ୍ୟ ସମସ୍ତ ପ୍ରାଣୀ କପଟତାହୀନ । ଏହି ପ୍ରସଙ୍ଗରେ ସେମାନେ ଅନେକ ସହଜ ଓ ସାବଲୀଳ । ଆଧୁନିକ ମଣିଷ ସମାଜ ଗଣଧର୍ଷଣ, ଗୋଷ୍ଠିମିଳନ ଆଦି ଯୌନବିକୃତି ଦ୍ୱାରା କଳଙ୍କିତ । ସାଧାରଣ ମଣିଷଠୁ ଆରମ୍ଭ କରି ସମାଜସଂସ୍କାରକ, ଧର୍ମଗୁରୁ, ଶିକ୍ଷକ, ଦାର୍ଶନୀକ ସମସ୍ତେ ଏଥିପାଇଁ ଚିନ୍ତିତ । ଏହାର ଉଚ୍ଛେଦ ପାଇଁ କେତେ କାର୍ଯ୍ୟକ୍ରମ ହେଲାଣି ହେଲେ ଯୌନ ଅପରାଧ ସଂଖ୍ୟା ଦିନକୁ ଦିନ ବଢ଼ିଚାଲିଛି । ମଣିଷ ତାର ଏହି ଆଚରଣକୁ ସେ ପଶୁସୁଲଭ ଆଖ୍ୟାୟିତ କରିଛି । ମାତ୍ର ପଶୁମାନଙ୍କ ଭିତରେ ବିକୃତି ବା ପରଭରସନ ବୋଲି କିଛି ନାହିଁ । ସେ ଯାହା କରେ ଅନ୍ତରର ତାଗିଦରେ ବଂଚିବାର ପ୍ରୟାସରେ । ମଣିଷର ଯୌନ ଚେତନା ସେଇଦିନ ଆସିବ ଯେଉଁଦିନ ସେ ପଶୁମାନଙ୍କ ଯୌନ ଜୀବନର ସମ୍ପୂର୍ଣ୍ଣ ମୂଲ୍ୟାଙ୍କନ କରିପାରିବ । "To go to the animals means to go home."

ଆଜିକୁ ଦଶବର୍ଷ ପୂର୍ବେ ''ମିଳନର ଛନ୍ଦ'' ଧାରାବାହିକ ଭାବେ ଦୈନିକ 'ସମ୍ବାଦ'ରେ ପ୍ରକାଶ ପାଇଥିଲା । ଏହାର କିଛି କିସ୍ତି ଅମୃତାୟନରେ ପ୍ରକାଶ ପାଇଛି । ସେ ସମୟରେ ଲେଖାଗୁଡ଼ିକ ପାଇଁ ମୁଁ ପାଠକମାନଙ୍କଠୁ ଅନେକ ଉତ୍ସାହପୂର୍ଣ୍ଣ ଚିଠି ପାଇଛି । ସେମାନଙ୍କ ଉତ୍ସାହ ଓ ବନ୍ଧୁ 'କନିଷ୍କ'ର ଆଗ୍ରହରେ 'ମିଳନର ଛନ୍ଦ' ଆଜି ପୁସ୍ତକାରରେ ପ୍ରକାଶ ପାଇଛି । ଏହି ଅବସରରେ ମୁଁ 'ସମ୍ବାଦ' ଓ 'ଅମୃତାୟନ'ର ସମ୍ପାଦକଙ୍କୁ ଶ୍ରଦ୍ଧାର ସହ ସ୍ମରଣ କରୁଛି ।

ପାଠକମାନଙ୍କପ୍ରେରଣା ହିଁ ମୋର ପାଥେୟ ।

# ସୃଷ୍ଟିର ଆଦିକଥା ଓ ସ୍ତ୍ରୀ ପୁରୁଷ ବିଭାଜନ

ପୃଥିବୀରେ ଜୀବନ କେଉଁଠୁ ଆସିଲା ? ପ୍ରଥମ ପ୍ରାଣୀ କିଏ ? ପ୍ରଶ୍ନଟି ଯଦିଓ ବହୁତ ଛୋଟ ଓ ବୋଧଗମ୍ୟ ହେଲେ ନିର୍ଦ୍ଦିଷ୍ଟ ପ୍ରମାଣ ଓ ସୁଚିନ୍ତିତ ବୈଜ୍ଞାନିକ ଅନୁଧ୍ୟାନ ଅଭାବରୁ, ବହୁ ଦିନ ପର୍ଯ୍ୟନ୍ତ ବିଷୟଟି ରହସ୍ୟାବୃତ ଥିଲା । ଉତ୍ତର ପାଇଁ ଦାର୍ଶନିକ, ଧର୍ମଗୁରୁ, ବୈଜ୍ଞାନିକ କେହି ପଛପା ହୋଇ ନାହାନ୍ତି । ମନ୍ତବ୍ୟ ଗୁଡ଼ିକ ମଧ ବେଶ ଆକର୍ଷଣୀୟ ବିଜ୍ଞାନ ଓ ଦର୍ଶନର ଆଦିପୁରୁଷ ଆରିଷ୍ଟଟଲଙ୍କ ସୃଷ୍ଟି ରହସ୍ୟ ସମ୍ବନ୍ଧୀୟ ଉକ୍ତି ଗୁଡ଼ିକ ପ୍ରାୟ ଦୁଇ ହଜାର ବର୍ଷ ଧରି ସର୍ବଜନ ସ୍ୱୀକୃତ ଥିଲା "ଜୀବନର ସ୍ୱକୀୟ ଉତ୍ପତ୍ତି ଓ ଜୀବନ ମୃତ ଶରୀରର ପରିବର୍ତ୍ତିତ ଓ ପରିବର୍ଦ୍ଧିତ ରୂପ ମାତ୍ର" ଥିଲା ତାଙ୍କ ବକ୍ତବ୍ୟର ଆଧାର । "ଜୀବନର ସ୍ୱକୀୟ ଉତ୍ପତ୍ତି" (Spontaneous Origin of Life) ସାଙ୍ଗକୁ ଧର୍ମଯାଜକ ଓ ଧର୍ମଗୁରୁମାନଙ୍କ ସୃଷ୍ଟି ରହସ୍ୟର ମୀମାଂସା ଗୁଡ଼ିକ ମଧ ସେ ସମୟରେ ବେଶ୍ ପ୍ରଚଳିତ ଥିଲା । ଧର୍ମ ଭିତ୍ତିକ ସୃଷ୍ଟି ରହସ୍ୟ ସମାଧାନର ଗଳ୍ପ ଗୁଡ଼ିକର ମୂଳକଥା; ପୃଥିବୀ ବାହାରେ ଅନ୍ୟ କେଉଁ ଗ୍ରହରେ ଦେବଲୋକ ଅବସ୍ଥିତ, ସେଠାରେ ରହୁଥିବା ଦେବତାମାନେ ମଣିଷ ଅପେକ୍ଷା ବହୁଗୁଣରେ ଉନ୍ନତ ଓ ଐଶ୍ୱରୀକ ଶକ୍ତି ସମ୍ପନ୍ନ । ପୃଥିବୀରେ ସେମାନେ ନିଜ ଖିଆଲ ଓ ଖୁସିରେ ବିଭିନ୍ନ ଜୀବଜନ୍ତୁ ତଥା ବୃକ୍ଷଲତା ସୃଷ୍ଟି କରିଛନ୍ତି । ଆଉ କେତେକଙ୍କ ମତରେ ମଞ୍ଜି ବୁଣିଲା ପରି ଦେବତାମାନେ ପୃଥିବୀରେ ଜୀବନର ମଞ୍ଜି ବୁଣିଛନ୍ତି ତା' ପରେ ଜୀବନ ପଲ୍ଲବିତ ହୋଇଛି ।

ଏହି ମତବାଦ ବିରୁଦ୍ଧରେ ପ୍ରଥମ ସ୍ୱର ଉଠେଇ ଥିଲେ ସପ୍ତଦଶ ଶତାବ୍ଦୀରେ ଏନ୍‌ଟୋନି ଫନ୍ ଲିୟୁ୍ୟଏନହକ (Antonij Von Leeuwenhock) ଓ ଅଷ୍ଟାଦଶ ଶତାବ୍ଦୀରେ ଫ୍ରାନ୍ସିସ୍କୋ ରେଡ଼ି (Franesco Redi) । ଲିୟୁ୍ୟଏନହକ୍‌ଙ୍କ, ବିଜ୍ଞାନରେ କୌଣସି ପେଶାଦାରୀ ଶିକ୍ଷା ବା ବ୍ୟୁତ୍ପତ୍ତି ନଥିଲା । ନିଛକ କୌତୁହଳ ଓ ଅବସର ବିନୋଦନରୁ ଆଧୁନିକ ବିଜ୍ଞାନକୁ ତାଙ୍କର ଦାନ ଅତୁଳନୀୟ । ଆଧୁନିକ ଅଣୁବୀକ୍ଷଣ ଯନ୍ତ୍ରର ସେ ଥିଲେ ଉଦ୍ଭାବକ । ସେ ପ୍ରଥମକରି ଖାଲି ଆଖିରେ ଦେଖାଯାଇ ନଥିବା ଛୋଟ ଛୋଟ ଜୀବ, ଲୋହିତ ରକ୍ତକଣିକା, ଶୁକ୍ରାଣୁ ଆଦି ଦେଖିଥିଲେ । ପୋଖରୀ ପାଣିରେ ଥିବା ଛୋଟ ଛୋଟ ଜୀବଗୁଡ଼ିକର ଉତ୍ପତ୍ତି ସମ୍ବନ୍ଧରେ ତାଙ୍କର ନିର୍ଦ୍ଦିଷ୍ଟ ଧାରଣା ନଥିଲା ହେଲେ ସେମାନଙ୍କ ଜୀବନଯାପନ ଓ ମିଳନ ଆଦି କ୍ରିୟାକୁ ଲିପିବଦ୍ଧ କରିଥିଲେ । ତାଙ୍କ ପରେ ରେଡ଼ି ପ୍ରମାଣ କଲେ ଜୀବନର ସ୍ୱକୀୟ ଉତ୍ପତ୍ତି ସମ୍ବନ୍ଧୀୟ ସମସ୍ତ ତଥ୍ୟ କବି କଳ୍ପନା ଓ ଦାର୍ଶନୀକ ବିଳାସ ମାତ୍ର ।

ଅଷ୍ଟାଦଶ ଶତାବ୍ଦୀ ପରଠୁ ରାସାୟନ ବିଜ୍ଞାନୀ ଓ ଜୀବବିଜ୍ଞାନୀମାନଙ୍କ ମିଳିତ

ପ୍ରଚେଷ୍ଟାରେ ଜୀବନର ରହସ୍ୟ ସଂଧାନ ଏକ ନୂତନ ମୋଡ଼ ନେଲା । ହ୍ୟାଲଡେନ୍, ଓପାରନ୍ ଓ କ୍ୟାଲଭିନ ପ୍ରଭୃତି ବୈଜ୍ଞାନିକ ବିଜ୍ଞାନଗାରରେ ମୌଳିକ ରାସାୟନିକ ପଦାର୍ଥରୁ ଜୀବନର ପ୍ରାଥମିକ ଉପାଦାନ ଏମିନୋ ଏସିଡ଼ ତିଆରି କଲେ । ସେମାନଙ୍କ ଏହି ସଫଳତା ପ୍ରମାଣ କଲା "ଜୀବନର ଉତ୍ପତ୍ତି ଅଜୈବିକ ପଦାର୍ଥରୁ ହିଁ ହୋଇଛି ।"

ଗଛ ଓ କାଠ ଗଣ୍ଡିଟିଏ ବା ମଣିଷ ଓ ତା'ର ଶବ ଭିତରେ ଅନେକ ଫରକ । ପ୍ରଥମଟି ଜୀବନ୍ତ ଓ ଦ୍ୱିତୀୟଟି ମୃତ । ପ୍ରଶ୍ନ ହେଉଛି ଜୀବନ କ'ଣ ? "ଜୀବନ କେତୋଟି କ୍ରିୟାର ସମାବେଶ । କ୍ରିୟାଗୁଡ଼ିକ ମୂଳତଃ ବଂଶବିସ୍ତାର କ୍ଷମତା, ଶ୍ୱାସପ୍ରଶ୍ୱାସ ଗ୍ରହଣ, ଖାଦ୍ୟ ଗ୍ରହଣ ଓ ପରିପାକ ଓ ମଳମୂତ୍ର ନିଷ୍କାସନ ଆଦି କ୍ରିୟା । କ୍ରିୟାଗୁଡ଼ିକ ସୁଷ୍ଠ ଭାବରେ ପାଳନ କରୁଥିବା ପ୍ରାଣୀ ବା ଉଦ୍ଭିଦ ହିଁ ଜୀବନ୍ତ, ଶରୀରରେ ସମସ୍ତ କ୍ରିୟାଗୁଡ଼ିକୁ ସମ୍ପାଦନ କରିବା ପାଇଁ ଆବଶ୍ୟକ ବିଭିନ୍ନ ପ୍ରକାରର ଏନ୍‌ଜାଇମ୍ (Enzyme) । ଶରୀରର ଦରକାର ଅନୁଯାୟୀ ବିଭିନ୍ନ କୋଷରେ ବିଭିନ୍ନ ପ୍ରକାର ଏନ୍‌ଜାଇମ୍ ତିଆରି ହୁଏ । ଏନ୍‌ଜାଇମ୍ ତିଆରି ପାଇଁ ରହିଛି ନିର୍ଦ୍ଦିଷ୍ଟ ପ୍ରଣାଳୀ ଏବଂ ନିର୍ଦ୍ଦିଷ୍ଟ ନକସା ବା ବ୍ଲୁ ପ୍ରିଣ୍ଟ(Blue Print) । ଏହି ନକ୍ସା ଯାହାକୁ ଆମେ କହୁଛୁ 'ଜିନ'(Gene) । ପ୍ରତ୍ୟେକ ପ୍ରାଣୀ ପିତାମାତଙ୍କଠାରୁ ପାଇଥାନ୍ତି । ଜିନର ରାସାୟନିକ ଗୁଣ ଏବଂ ସେଇ ଅନୁଯାୟୀ ତା'ର ନାମ ଡିଅକ୍ସିରାଇବୋ ନ୍ୟୁକ୍ଲିକ ଏସିଡ୍ ସଂକ୍ଷେପରେ ଡି.ଏନ୍.ଏ.(DNA) । ଡି.ଏନ୍.ଏ. ସାଙ୍ଗକୁ କୋଷରେ ରହୁଛି ଆଉ ଏକ ଅମ୍ଳ ଯାହାର ନାଁ ରାଇବୋନ୍ୟୁକ୍ଲିକ୍ ଏସିଡ୍ ସଂକ୍ଷେପରେ ଆର.ଏନ୍.ଏ.(RNA) । ଜିନର ଦୁଇଟି ପ୍ରଧାନ କାମ: ତାହା ପିତାମାତାଙ୍କ ଗୁଣ, ଶୁକ୍ରାଣୁ ଓ ଡିମ୍ବାଣୁ ଜରିଆରେ ସନ୍ତାନଠି ପହଞ୍ଚାଏ । ତେଣୁ ମଣିଷର ସମସ୍ତ ଚରିତ୍ର ନେଇ ମଣିଷ ଛୁଆ ଜନ୍ମେ ଏବଂ କୁକୁରର ଛୁଆ କେବଳ କୁକୁର ହିଁ ହୋଇଥାଏ । ଦ୍ୱିତୀୟ କାମ ଜିନ ଆବଶ୍ୟକ ଅନୁଯାୟୀ ବିଭିନ୍ନ ଏନଜାଇମ୍ ବା ପ୍ରୋଟିନମାନ ତିଆରି କରିଥାଏ । ଯେ ପର୍ଯ୍ୟନ୍ତ ଶରୀରରେ ଆବଶ୍ୟକ ଅନୁଯାୟୀ ନିର୍ଦ୍ଦିଷ୍ଟ ପ୍ରୋଟିନ୍ ତିଆରି ହେଉଛି ଏବଂ ପ୍ରୋଟିନ ଅଥବା ଏନଜାଇମ ଶରୀରର ଅନ୍ୟାନ୍ୟ ଯୌଗ ଶ୍ୱେତସାର, ସ୍ନେହସାର, ଭିଟାମିନ ଆଦି ସହ ନିୟନ୍ତ୍ରଣାଧିନ ରହୁଛି । ଶରୀର ସୁସ୍ଥ ରହୁଛି ଓ ପ୍ରାଣୀ ଜୀବନ୍ତ ରହୁଛି । ତେଣୁ 'ଜୀବନ'ର ସଂଜ୍ଞା ଦେବାକୁ ଯାଇ ଦାର୍ଶନିକ ବୈଜ୍ଞାନିକ ହାର୍ବର୍ଟ ସ୍ପେନସାର କହିଛନ୍ତି "ଲାଇଫ ଇଜ ଏ କୋଅର୍ଡ଼ିନେସନ୍ ଅଫ୍ ଡିଫରେଣ୍ଟ ଫିଜିଓଲଜିକାଲ ଆକ୍ଟିଭିଟିଜ୍ ଦି ଲ୍ୟାକ୍ ଅଫ୍ କୋଅର୍ଡ଼ିନେସନ୍ ଇଜ୍ ଡେଥ୍" ତେଣୁ ଜୀବନ କିଛି ଅଣୁ ପରମାଣୁର ସହବସ୍ଥାନ । ଏବେ ବୈଜ୍ଞାନିକମାନେ ଆଉ ଗୋଟିଏ ପାହୁଣ୍ଡ ଆଗକୁ ଯାଇ କହୁଛନ୍ତି ଆମର ବ୍ୟବହାର ଆମର ଚେତନା ସବୁ ଜିନ୍ ନିର୍ଭର । ସବୁ ସେଇ ଅଣୁ ପରମାଣୁର ଛନ୍ଦମୟ ଅବସ୍ଥାନ ।

ଆଜିକୁ ପ୍ରାୟ ୨୭୦ କୋଟି ବର୍ଷ ପୂର୍ବେ ପୃଥିବୀରେ ପ୍ରଥମ ଜୀବନର ସଙ୍କେତ ମିଳିଥିଲା । ସୃଷ୍ଟିପରେ ପୃଥିବୀର ବାୟୁମଣ୍ଡଳରେ ଭରିଥିଲା ଅମ୍ଳଜାନ, ଉଦ୍‌ଜାନ, ଯବକ୍ଷାରଜାନ, କାର୍ବନ, ହିଲିୟମ୍ ଆଦି ଗ୍ୟାସ ସାଙ୍ଗକୁ ଥିଲା ଗ୍ୟାସୀୟ ଅବସ୍ଥାରେ ଅନ୍ୟାନ୍ୟ ମୌଳିକ ପଦାର୍ଥ । କ୍ରମେ ଅମ୍ଳଜାନ ଓ ଉଦ୍‌ଜାନ ସଂଯୋଗରେ ପାଣି, ଉଦ୍‌ଜାନ ଓ ଯବକ୍ଷାରଜାନ ସଂଯୋଗରେ ଆମୋନିୟା, ଉଦ୍‌ଜାନ ଓ କାର୍ବନ ସଂଯୋଗରେ ମିଥେନ ଆଦି ତିଆରି ହେଲା । ଧୀରେ ଧୀରେ

ପୃଥିବୀପୃଷ୍ଠ ଥଣ୍ଡା ହେବାକୁ ଲାଗିଲା । ଅମ୍ଳଜାନ ଓ ଉଦ୍‌ଜାନ ସଂଯୋଗରେ ହୋଇଥିବା ଜଳୀୟବାଷ୍ପ ଘନିଭୂତ ହୋଇ ମେଘର ଆକାର ନେଲା, ଆରମ୍ଭ ହେଲା ପ୍ରବଳ ବର୍ଷା । ସେଦିନର ବର୍ଷା ଏବେର ବର୍ଷାପରି ଦିନ ଅଧେ ହେଉନଥିଲା । ଲଗାତାର ପ୍ରବଳ ବର୍ଷା ମାସ ମାସ ଧରି ଲାଗି ରହୁଥିଲା । ସାଗରର ସୃଷ୍ଟି ହେଲା । ସାଗର ପାଣିରେ ବିଭିନ୍ନ ଲବଣ ମିଶି ‘ସାଗର ପାଣି ଲୁଣିଆ ହେଲା । ସାଗରର ଲୁଣିଆ ପାଣି ଜୀବନ ସୃଷ୍ଟି ପାଇଁ ଏକ ସୁନ୍ଦର ପରିବେଶ ତିଆରି କଲା । ପରିବେଶ ସୃଷ୍ଟି ପରେ ପରେ ସାଗର ବକ୍ଷରେ ତିଆରି ହୋଇଛି ବିଭିନ୍ନ ଜୈବିକ ଅଣୁ ଯେପରି ବିଭିନ୍ନ ପ୍ରକାରର ଆମିନୋ ଏସିଡ୍, ବିଭିନ୍ନ ଧରଣର ନ୍ୟୁକ୍ଲିଓ ଟାଇଡ୍ । କ୍ରମେ ତିଆରି ହୋଇଛି ନିମ୍ନମାନର ପ୍ରୋଟିନ ଓ ଡି.ଏନ୍.ଏ.ର ଟୁକୁରା । ଏଇଠି ଗୋଟିଏ ପ୍ରଶ୍ନର ଉତ୍ତର ଏଯାଏଁ ଅନୁଚ୍ଚାରିତ ରହିଛି । ପ୍ରୋଟିନ ଓ ଡି.ଏନ୍.ଏ. ଅଣୁର ତିଆରି ପ୍ରକ୍ରିୟା କିଭଳି ପରସ୍ପର ଉପରେ ନିର୍ଭର କଲେ ।

ଯାହାହେଉ, ପ୍ରକୃତିର ସମସ୍ତ ପରୀକ୍ଷାର ସର୍ବଶ୍ରେଷ୍ଠ ସଫଳତା ମିଳିଲା ଯେଉଁଦିନ ପ୍ରଥମ ଜୀବକୋଷଟିଏ ସାଗର ବକ୍ଷରେ ଭାସି ଉଠିଲା । ସେଦିନର ସେଇ ମହୋତ୍ସବରେ ଯେଉଁ ଶକ୍ତି ପ୍ରକୃତିକୁ ସାହାଯ୍ୟ କରିଥିଲେ, ସେମାନେ ହେଲେ ଘନ ଘନ ବିଦ୍ୟୁତ୍‌ପାତ, ଉପଯୁକ୍ତ ଉତ୍ତାପ ଏବଂ ସର୍ବୋପରି ସାଗରର ସୁନ୍ଦର ପରିବେଶ ଯାହା ଲୁଣିଆ ପାଣି ଯୋଗେଇଥିଲା । ଏକଥା କହିବା ବାହୁଲ୍ୟ ଯେ ପ୍ରଥମ କୋଷଟି ଅତି ନିମ୍ନମାନର ଥିଲା ତେବେ ଜୀବନ ସୃଷ୍ଟି ପରେ ପରେ ପ୍ରକୃତି ଆଉ ପଛକୁ ଅନେଇ ନାହିଁ । ତା’ର ସର୍ବଶ୍ରେଷ୍ଠ କୃତି ଜୀବନକୁ ସେ ସର୍ବାଙ୍ଗସୁନ୍ଦର କରି ଚାଲିଛି । ଏବେ ମଧ୍ୟ ସେଇ କ୍ରିୟା ଅବ୍ୟାହତ ରହିଛି । ସେଦିନ ଗୋଟିଏ କୋଷ ମଧ୍ୟରେ ସୀମାବଦ୍ଧ ଜୀବନ ଆଜି ୨୭୦ କୋଟି ବର୍ଷ ପରେ ନିଜକୁ ବହୁ ରୂପରେ ପ୍ରକାଶ କରିଛି । ‘‘ଏକମ୍ ଏବ ଅଦ୍ୱିତୀୟମ ବହୁବିଧେ ପ୍ରକାଶୟତେ’’ ।

ସୃଷ୍ଟିପରେ କୋଷଗୁଡ଼ିକ ସମୁଦ୍ର ପାଣିରେ ଭାସି ରହିଲେ ତାପ ଓ ବିଦ୍ୟୁତ୍ ପ୍ରଭାବରେ ଅନେକ କୋଷ ଭିତରେ ବିଭିନ୍ନ ପ୍ରକାରର ପରିବର୍ତ୍ତନ ଆସିଲା । କ୍ରମେ କୋଷଗୁଡ଼ିକ ନିଜ ଶରୀରର ଖଣ୍ଡିତ ଅଂଶରୁ ବଂଶବୃଦ୍ଧି କଲେ ଓ ସମଗୋତ୍ରୀୟ କୋଷଗୁଡ଼ିକ ଦଳବଦ୍ଧ ହୋଇ ରହିଲେ । ଦଳବଦ୍ଧ ହୋଇ ରହିବା ଦ୍ୱାରା ସେମାନେ ବଞ୍ଚିବା ପାଇଁ ବିଭିନ୍ନ କାମଗୁଡ଼ିକ ନିଜ ମଧ୍ୟରେ ବାଣ୍ଟିନେଲେ । ଦଳେ ଖାଦ୍ୟ ସଂଗ୍ରହ କଲେ ଓ ଅନ୍ୟମାନେ ବଂଶ ବିସ୍ତାର କାମରେ ମନୋନିବେଶ କଲେ । ଯେଉଁମାନେ ବଂଶବୃଦ୍ଧି କାମରେ ରହିଲେ ସେମାନେ ବାରମ୍ବାର ନିଜ ଶରୀରକୁ ଦ୍ୱିଖଣ୍ଡିତ କରୁଥିବାରୁ କ୍ରମେ ଦୁର୍ବଳ ହୋଇପଡ଼ିଲେ ଓ ନିଜ ଶରୀରର ଖଣ୍ଡିତ ଅଂଶରୁ ବଂଶ ବୃଦ୍ଧି କରୁଥିବାରୁ ସେମାନଙ୍କ ମଧ୍ୟରେ ବୈଚିତ୍ର୍ୟତା ମଧ୍ୟ ରହିଲା ନାହିଁ । ବୈଚିତ୍ର୍ୟତା ଆଣିବା ପାଇଁ ଗୋଟିଏ ଦଳର କୋଷ ଅନ୍ୟ ଦଳର କୋଷ ସହ ମିଳିତ ହେଲେ ଆରମ୍ଭ ହେଲା ମିଳନରୁ ବଂଶବୃଦ୍ଧି ସୃଷ୍ଟିହେଲା ନୂତନ ପ୍ରଜନ୍ମ ନୂତନ ଚରିତ୍ର ନେଇ ।

କ୍ରମେ ବଂଶବୃଦ୍ଧି କରୁଥିବା କୋଷଗୁଡ଼ିକ ମିଳନର ସୁବିଧା ପାଇଁ ନିଜ ଆକାରରେ କିଛି ପରିବର୍ତ୍ତନ ଆଣିଲେ । ଯେଉଁ କୋଷଗୁଡ଼ିକରୁ ମିଳିତ ହେବା ପାଇଁ କିଛି ବାଟ ଯିବାକୁ ପଡ଼ିଲା ସେମାନେ ପହଁରିବାର ସୁବିଧା ପାଇଁ ନିଜକୁ ଲମ୍ବାଳିଆ ଓ ଲାଞ୍ଜଯୁକ୍ତ କରି ନେଲେ । ଏହି

କୋଷଗୁଡ଼ିକ ପରବର୍ତ୍ତୀ ସମୟରେ ହେଲେ ପୁଂକୋଷ ବା ଶୁକ୍ରାଣୁ । ଯେଉଁ କୋଷଗୁଡ଼ିକ ଚାଲବୁଲ ନ କରି ଗୋଟିଏ ଯାଗାରେ ରହିଲେ, କୋଷ ଭିତରେ ପରବର୍ତ୍ତୀ ବୃଦ୍ଧି ପାଇଁ ଖାଦ୍ୟ ସଞ୍ଚୟ କଲେ ସେମାନେ ପରବର୍ତ୍ତୀ ସମୟରେ ହେଲେ ସ୍ତ୍ରୀକୋଷ ବା ଡିମ୍ବାଣୁ(Ovum) । ସୃଷ୍ଟିରେ ବୈଚିତ୍ର୍ର ଆଣିବାରେ ପ୍ରକୃତିର ପ୍ରଥମ ଉଦ୍ୟମ ସ୍ତ୍ରୀ ଓ ପୁରୁଷର ବିଭାଜନ ଏକ ସାହସିକ ଉଦ୍ୟମ ଏଥିରେ ସନ୍ଦେହ ନାହିଁ ।

## ପୁଅ ନା ଝିଅ

ପ୍ରତ୍ୟେକ ପିତାମାତା ସନ୍ତାନଟିଏ କାମନା କରନ୍ତି । ସନ୍ତାନର ଆଗମନରେ 'ଜିନ' ଗୋଟିଏ ପ୍ରଜନ୍ମରୁ ଅନ୍ୟ ପ୍ରଜନ୍ମକୁ ପହଞ୍ଚିଯାଏ-ସୃଷ୍ଟି ରକ୍ଷା ହୁଏ । ବିଂଶ ଶତାବ୍ଦୀ ସରିଲାଣି । ବିଜ୍ଞାନର ବିଭିନ୍ନ ଆବିଷ୍କାର ମଣିଷ ପାଇଁ ଦେଇଛି ବଞ୍ଚିବାର ନୂତନ ସୁଆଦ । ମୃତ୍ୟୁକୁ ମଣିଷ କାବୁ କରିପାରି ନାହିଁ ହେଲେ ଚିକିତ୍ସା ବିଜ୍ଞାନ ମଣିଷର ଆୟୁକୁ ଲମ୍ୱେଇ ଦେଇଛି । କେବଳ ଇଚ୍ଛା ମୁତାବକ ସନ୍ତାନଟିଏ ପାଇବାରେ ମଣିଷ ଏଯାଏଁ ଈଶ୍ୱରଙ୍କ ଉପରେ ହିଁ ନିର୍ଭର କରୁଛି । ମାତା ଗର୍ଭରେ ଥିବା ଅବସ୍ଥାରେ ସନ୍ତାନର ଲିଙ୍ଗ ତା'ର ଜେନିକ ମେକ୍ଅପ୍ ସେ ଜାଣିପାରୁଛି । ଇଚ୍ଛା ହେଲେ ପିତାମତା ସନ୍ତାନକୁ ପୃଥିବୀକୁ ଆଣୁଛନ୍ତି ନଚେତ ଅକାଳରେ ଭ୍ରୁଣର ପତନ ହେଉଛି । ତେଣୁ ଇଚ୍ଛା ମୁତାବକ ସନ୍ତାନର ସାଫଲ୍ୟ ସମ୍ପୂର୍ଣ୍ଣ ନ ପାଇଲେ ମଧ୍ୟ ସେ ଏ ଦିଗରେ କିଛି ବାଟ ଅଗ୍ରସର ହୋଇଛି । ଇଚ୍ଛାମୁତାବକ ପୁଅ ବା ଝିଅର ଆକାଂକ୍ଷା ମଣିଷର ଅନେକ ଦିନର । ପୁରାଣ ଯୁଗରୁ ଏଥିପାଇଁ ପିତାମାତା ଚେଷ୍ଟିତ । ଏବେ ପ୍ରଶ୍ନ ହେଉଛି ଇଚ୍ଛାମୁତାବକ ପୁଅ ବା ଝିଅ ସମ୍ଭବ କି ? ଏହି ପ୍ରସଙ୍ଗରୁ ଆଉ ଏକ ପ୍ରଶ୍ନ ଆସୁଛି ସନ୍ତାନର ଲିଙ୍ଗ କିଏ ନିର୍ଣ୍ଣୟ କରେ ? ସବୁ ପ୍ରାଣୀରେ ଏହି ନିୟମ ପ୍ରଚଳିତ ? ଲିଙ୍ଗ ପରିବର୍ତ୍ତନ ସମ୍ଭବ କି ?

ଲିଙ୍ଗୀୟ ଜନନ(Sexual reproduction) ପାଇଁ ଆବଶ୍ୟକ ଦୁଇଟି କୋଷ । ଗୋଟିଏ ପୁରୁଷଜାତ ଶୁକ୍ରାଣୁ ଅନ୍ୟଟି ସ୍ତ୍ରୀଜାତ ଡିମ୍ବାଣୁ ।ଏହି କୋଷଗୁଡ଼ିକ ଶରୀରର ନିର୍ଦ୍ଦିଷ୍ଟ ଅଙ୍ଗ ଯଥା ଶୁକ୍ରାଶୟ ଓ ଗର୍ଭାଶୟରେ ତିଆରି ହୋଇଥାନ୍ତି । ଶୁକ୍ରାଣୁ ଓ ଡିମ୍ବାଣୁର ବିଶେଷତ୍ୱ ହେଲା ଶରୀରର ଅନ୍ୟ ସମସ୍ତ କୋଷରେ ଥିବା କ୍ରୋମୋଜୋମ୍ (ଗୁଣସୂତ୍ର) ସଂଖ୍ୟା ଦୁଇଗୁଣ ଥିବା ସମୟରେ ଶୁକ୍ରାଣୁ ଓ ଡିମ୍ବାଣୁରେ ଏହି ସଂଖ୍ୟା ଏକ ଗୁଣ ରହୁଛି । ଏ ଶତାବ୍ଦୀର ପ୍ରଥାମାର୍ଦ୍ଧରେ କୋଷବିଜ୍ଞାନୀମାନେ ଲକ୍ଷ୍ୟକଲେ ଅନେକ ପ୍ରାଣୀରେ ସ୍ତ୍ରୀ ଓ ପୁରୁଷ କୋଷରେ ଥିବା କ୍ରୋମୋଜୋମ୍ ସଂଖ୍ୟା ବା ଆକାର ଭିନ୍ନ । ଏହି ଭିନ୍ନତା କେବଳ କେତୋଟି ନିର୍ଦ୍ଦିଷ୍ଟ କ୍ରୋମୋଜୋମ୍ ମଧ୍ୟରେ ହିଁ ସୀମାବଦ୍ଧ । ଲିଙ୍ଗ ନିର୍ଣ୍ଣୟ ସହ ଜଡ଼ିତ ହୋଇଥିବାରୁ କୋଷ ବିଜ୍ଞାନୀମାନେ ଏହି କ୍ରୋମୋଜୋମ୍ ଗୁଡ଼ିକୁ ସେକ୍ସ କ୍ରୋମୋଜୋମ୍ (ଲିଙ୍ଗୀୟ ଗୁଣସୂତ୍ର) ନାମରେ ଆଖ୍ୟାୟିତ କଲେ । ଏହି କ୍ରୋମୋଜୋମଗୁଡ଼ିକର ସଠିକ ଗୁଣ ଓ ସେମାନଙ୍କ କାର୍ଯ୍ୟକାରୀତା ସମ୍ବନ୍ଧରେ ଜଣା ନଥିବାରୁ, ବୀଜଗଣିତରେ ଯେପରି ଏକ ଅଜ୍ଞାତ ରାଶିକୁ 'X' ଓ 'Y' ରୂପେ ଧରନିଆହୁଏ ସେହିପରି




୧୮୭୫ ଖ୍ରୀଷ୍ଟାବ୍ଦରେ ଶୁକ୍ରାଣୁ ଓ ଡ଼ିମ୍ବାଣୁର ମିଳନରୁ ଜାତ ଜାଇଗୋଟ ପ୍ରଥମ କରି ଆବିଷ୍କୃତ ହେଲା । ମଣିଷ ଶୁକ୍ରାଣୁରେ ରହୁଛି ୨୩ଟି ଗୁଣସୂତ୍ର ଓ ଡ଼ିମ୍ବାଣୁରେ ରହୁଛି ୨୩ଟି ଗୁଣସୂତ୍ର । ଦୁହିଁଙ୍କ ମିଳନରୁ ତିଆରି ହୋଇଥିବା ଜାଇଗୋଟରେ ୨୩ ଯୋଡ଼ା ଗୁଣସୂତ୍ର ରହୁଛି ।

ସେକ୍ସ କ୍ରୋମୋଜୋମ୍ ଗୁଡ଼ିକ ‘X’ ଓ ‘Y’ ନାମରେ ପରିଚିତ ହେଲେ । ଅନ୍ୟ କ୍ରୋମୋଜୋମଗୁଡ଼ିକ ଅଟୋଜୋମ (ଅଲିଙ୍ଗୀୟ ଗୁଣସୂତ୍ର) ନାମରେ ନାମାଙ୍କିତ ହେଲେ । ମଣିଷର ପ୍ରତି କୋଷରେ ସମୁଦାୟ କ୍ରୋମୋଜୋମର ସଂଖ୍ୟା ୪୬ । ଏହି ୪୬ଟି କ୍ରୋମୋଜୋମ୍ ମଧ୍ୟରୁ ୪୪ଟି ଅଟୋଜୋମ୍ ବାକି ଦୁଇଟି ସେକ୍ସ କ୍ରୋମୋଜୋମ୍ । ପୁରୁଷରେ ଏହା ‘X’ ଓ ‘Y’ ସ୍ତ୍ରୀରେ ଏହା ‘X’ ଓ ‘X’ ।

ଶୁକ୍ରାଣୁ ଓ ଡିମ୍ବାଣୁର ମିଳନ କ୍ଷଣରେ ହିଁ ସନ୍ତାନର ଲିଙ୍ଗ ନିର୍ଦ୍ଦିଷ୍ଟ ହୋଇଯାଏ । ପିତାଙ୍କ ‘X’ କ୍ରୋମୋଜୋମ୍ ବହନ କରୁଥିବା ଶୁକ୍ରାଣୁ ଯଦି ଡିମ୍ବାଣୁ ସହ ମିଳିତ ହୁଏ ତେବେ ସନ୍ତାନ କନ୍ୟା ହୁଏ ଅପରପକ୍ଷରେ ଯଦି ‘Y’ କ୍ରୋମୋଜୋମ୍ ଥିବା ଶୁକ୍ରାଣୁ ଡିମ୍ବାଣୁ ସହ ମିଳିତ ହୁଏ ତେବେ ସନ୍ତାନ ପୁତ୍ର ହୁଏ । ସନ୍ତାନର ଲିଙ୍ଗ ଶୁକ୍ରାଣୁ ଓ ଡିମ୍ବାଣୁ ମିଳନ କ୍ଷଣରେ ନିର୍ଦ୍ଦିଷ୍ଟ ହେଲେ ହେଁ ପୁରୁଷ ଚରିତ୍ର ପ୍ରକାଶ ପାଏ ଯେବେ ପୁରୁଷ ଭ୍ରୁଣରେ ଶୁକ୍ରାଶୟ ତିଆରି ହୁଏ । କୌଣସି କାରଣରୁ ଯଦି ‘Y’ କ୍ରୋମୋଜୋମ୍ ହଜିଯାଏ ବା ‘Y’ କ୍ରୋମୋଜୋମ୍ ବହନ କରୁଥିବା ନକ୍ସାରେ ଭୁଲଭ୍ରାନ୍ତି ହୁଏ, ସେପରି କ୍ଷେତ୍ରରେ ଶୁକ୍ରାଶୟ ଠିକ୍ ସମୟରେ ତିଆରି ହୁଏ ନାହିଁ ବା ତିଆରି ହୋଇମଧ୍ୟ ନିଜର ଉଦ୍ଦିଷ୍ଟ କାର୍ଯ୍ୟ ସମ୍ପାଦନ କରିପାରେ ନାହିଁ । ତେଣୁ ସନ୍ତାନରେ ଉଭୟ ସ୍ତ୍ରୀ ଓ ପୁରୁଷ ଚରିତ୍ର

ପ୍ରକାଶ ପାଏ । ସେମାନେ ସାଧାରଣତଃ ନଂପୁସକ ହୋଇଥାନ୍ତି । ଦେଖାଯାଇଛି ବୟଂସନ୍ଧିରେ ଯଦି ପୁରୁଷ ସନ୍ତାନର ଶୁକ୍ରାଶୟ ନଷ୍ଟ ହୋଇଯାଏ ବା କାର୍ଯ୍ୟକରିପାରେ ନାହିଁ ସେ କ୍ଷେତ୍ରରେ ସନ୍ତାନଟିରେ ପୁରୁଷ ଅପେକ୍ଷା ନାରୀ ଚରିତ୍ର ଅଧିକ ପ୍ରକାଶ ପାଏ । ତେଣୁ ଲିଙ୍ଗ ନିର୍ଣ୍ଣୟ ଯଦିଓ ଶୁକ୍ରାଣୁ ଓ ଡିମ୍ବାଣୁର ମିଳନ କ୍ଷଣରେ ହୋଇଯାଏ ପୁରୁଷ ଓ ସ୍ତ୍ରୀର ଚରିତ୍ର ପ୍ରକାଶ ନିର୍ଭର କରେ ହରମୋନର କ୍ଷରଣ ଉପରେ ।

ଅନେକ ଗୁଡ଼ିଏ ହରମୋନ ପରସ୍ପର ମଧ୍ୟରେ ତାଳମେଳ ରଖି ଚରିତ୍ର ପ୍ରକାଶ କରିବାରେ ସହାୟ ହୁଅନ୍ତି । ସମସ୍ତ ହରମୋନ ମଧ୍ୟରେ ସ୍ତ୍ରୀ ଡିମ୍ବାଶୟରୁ କ୍ଷରଣ ହୋଇଥିବା ଏସ୍ଟ୍ରୋଜେନ ନାମକ ହରମୋନଟି ଅନ୍ୟତମ । ଏସ୍ଟ୍ରୋଜେନ୍ ହରମୋନର କ୍ଷରଣରେ ସ୍ତ୍ରୀର ନାରୀତ୍ୱ ପ୍ରକାଶ ପାଏ । ନାରୀକୁ ସନ୍ତାନ ଧାରଣ କରେଇବାରେ ଏସ୍ଟ୍ରୋଜେନ ସହାୟ ହୁଏ । ଏସ୍ଟ୍ରୋଜେନ ପ୍ରଭାବରୁ ନାରୀ ଆରଥେରୋସ୍କ୍ଲେରୋସିସରେ ଅସୁସ୍ଥ ହୁଏ ନାହିଁ । ଏସ୍ଟ୍ରୋଜେନ ମାତୃ ଶରୀରର ଅଧିକା ଚର୍ବିକୁ ଭାଙ୍ଗିଦିଏ, ଯକୃତ ଉପରେ ପ୍ରଭାବ ପକାଇ ଏହା ହାଇଡେନସିଟି ଲାଇପୋପ୍ରୋଟିନ ତିଆରି କରାଏ । ଏହି ଲାଇପୋପ୍ରୋଟିନ୍ ନାରୀକୁ ମେଦଯୁକ୍ତ କରାଇବାରେ ସାହାଯ୍ୟ କରେ ଓ ନାରୀ ଧମନୀରେ କୋଲେଷ୍ଟେରଲ ଜମେ ନାହିଁ । ଯେ ପର୍ଯ୍ୟନ୍ତ ନାରୀ ଗର୍ଭାଶୟ କାର୍ଯ୍ୟକ୍ଷମ ଥାଏ ଏସ୍ଟ୍ରୋଜେନ ପ୍ରଭାବରୁ ଅନେକଗୁଡ଼ିଏ ସୁବିଧା ଉପଭୋଗ କରେ ଯାହା ପୁରୁଷ ପାଏ ନାହିଁ । ଏହାର କାରଣ ସ୍ତ୍ରୀ ହିଁ ସନ୍ତାନ ଧାରଣ କରିପାରେ ଓ 'ଜୀବନକୁ' ଗୋଟିଏ ପ୍ରଜନ୍ମରୁ ଅନ୍ୟ ପ୍ରଜନ୍ମକୁ ନେଇପାରେ ।




ଶୁକ୍ରାଣୁ: ଇଲେକ୍ଟ୍ରନ ମାଇକ୍ରୋସ୍କୋପର ଚିତ୍ର

ଡ଼ିମ୍ବାଣୁ ନିଷିକ୍ତ ହେବା ଅବସରରେ



ନିଷିକ୍ତ ହେବାର ପୂର୍ବାବସ୍ଥା । ଶୁକ୍ରାଣୁ ଦ୍ୱାରା ପରିବେଷ୍ଟିତ ଡ଼ିମ୍ବାଣୁ ।
ଇଲେକ୍‌ଟ୍ରନ ମାଇକ୍ରୋସ୍କୋପ ଚିତ୍ର

# ମିଳନ ଲାଗି ଜନନ କୋଷ

ମିଳନରୁ ବଂଶବୃଦ୍ଧି ପାଇଁ ଆବଶ୍ୟକ ଦୁଇଟି କୋଷ:-ପୁଂଜାତ ଶୁକ୍ରାଣୁ ଅନ୍ୟଟି ସ୍ତ୍ରୀଜାତ ଡିମ୍ବାଣୁ । ଜୀବଜଗତରେ ଶୁକ୍ରାଣୁ ଓ ଡିମ୍ବାଣୁର ମିଳନ ଏକ ବିସ୍ତାରିତ ଆଲେଖ୍ୟ । ଉଚ୍ଚବର୍ଗ ପ୍ରାଣୀମାନଙ୍କଠି ଏହି ମିଳନ ନିର୍ଦ୍ଦିଷ୍ଟ ଅଙ୍ଗମାନଙ୍କରେ ସମ୍ପାଦିତ ହେଉଛି । ମାତ୍ର ନିମ୍ନବର୍ଗ ପ୍ରାଣୀମାନଙ୍କଠି ସେପରି ନିର୍ଦ୍ଦିଷ୍ଟ ଅଙ୍ଗ ନାହିଁ । ଅଧିକାଂଶ କ୍ଷେତ୍ରରେ ଏହି ମିଳନ ପ୍ରକୃତି କୋଳରେ ସମ୍ପାଦିତ ହୋଇଥାଏ । ଅରକ୍ଷିତ ଅବସ୍ଥାରେ ମିଳନ ହେଉଥିବାରୁ ଶୁକ୍ରାଣୁ ଓ ଡିମ୍ବାଣୁଗୁଡ଼ିକର ନଷ୍ଟ ହୋଇଯିବାର ସମ୍ଭାବନା ଅଧିକ । ଏଥିପାଇଁ ନିମ୍ନବର୍ଗ ପ୍ରାଣୀମାନଙ୍କ ଡିମ୍ବାଣୁ ଓ ଶୁକ୍ରାଣୁ ସଂଖ୍ୟା ଯଥେଷ୍ଟ ଅଧିକ । ମଣିଷ ସ୍ତ୍ରୀ ଅଠେଇଶ ଦିନରେ ଗୋଟିଏ ମାତ୍ର ଡିମ୍ବାଣୁ ତିଆରି କରେ ବର୍ଷକରେ ବାରଟି । ଗୋଟିଏ ମାଈ ବେଙ୍ଗ ବର୍ଷକୁ ହଜାରରୁ ଅଧିକ ଅଣ୍ଡା ଦେଇଥାଏ ।

ମିଳନର ସମୟ ହେଲେ ନିମ୍ନବର୍ଗର ପ୍ରାଣୀମାନେ ପ୍ରାୟ ଏକା ସମୟରେ ଜନନ କୋଷଗୁଡ଼ିକୁ ରହୁଥିବା ପାଣିରେ ଛାଡ଼ି ଦିଅନ୍ତି । ମଧୁର ପାଣିରେ ରହୁଥିବା ମାଛ ଓ ଅନ୍ୟାନ୍ୟ ପ୍ରାଣୀ ସାଧାରଣ ବର୍ଷା ଦିନ ଆରମ୍ଭରେ ଅଣ୍ଡା ଦେଇଥାନ୍ତି ହେଲେ ସମୁଦ୍ର ପାଣିରେ ରହୁଥିବା

ପ୍ରାଣୀମାନଙ୍କ ପାଇଁ ମଧ୍ୟ ଏ ଅସୁବିଧା ନାହିଁ । ତେବେ ସମୁଦ୍ରରେ ଗୋଟିଏ ପ୍ରକାରର ପ୍ରାଣୀ ରହୁନାହାନ୍ତି । ହଜାର ହଜାର କିସମର ପ୍ରାଣୀ ସେମାନଙ୍କ ଶୁକ୍ରାଣୁ ଓ ଡିମ୍ୱାଣୁ ପାଣିରେ ଛାଡ଼ି ଦେଉଛନ୍ତି । ପ୍ରଶ୍ନ ହେଉଛି ଶାମୁକା ଶୁକ୍ରାଣୁ ସେଇ ପ୍ରଜାତିର ଶାମୁକା ଡିମ୍ୱାଣୁକୁ ଚିହ୍ନିବୁ କିପରି ? ଚିହ୍ନିବା ପ୍ରଣାଳୀଟି ଏକ ରାସାୟନିକ କ୍ରିୟା । ମିଳନ ପୂର୍ବରୁ ସଠିକ ପରିଚୟ ପାଇଁ ପ୍ରତ୍ୟେକ ଶୁକ୍ରାଣୁ ଓ ଡିମ୍ୱାଣୁରୁ ଏକ ପ୍ରକାର ପ୍ରୋଟିନ ନିସୃତ ହୁଏ । ପ୍ରୋଟିନ ଦୁଇଟି ଫର୍ଟିଲାଇଜିନ୍ ଓ ଆନ୍‌ଫର୍ଟିଲାଇଜିନ୍ ନାମରେ ପରିଚିତ । ଯେପରି ଗୋଟିଏ ତାଲାର ଚାବିରେ ଅନ୍ୟ ତାଲା ଖୋଲି ହୁଏ ନାହିଁ, ସେହିପରି ସ୍ୱଜାତୀୟ ଫର୍ଟିଲାଇଜିନ୍ ଓ ଆନ୍‌ଫର୍ଟିଲାଇଜିନ ପରସ୍ପରକୁ ଚିହ୍ନନ୍ତି ଓ ପରସ୍ପର ପ୍ରତି ଆକର୍ଷିତ ହୁଅନ୍ତି । ଏହି କାରଣରୁ ସମୁଦ୍ର ପାଣିରେ ବିଭିନ୍ନ ପ୍ରାଣୀର ଶୁକ୍ରାଣୁ ଓ ଡିମ୍ୱାଣୁ ଏକାଠି ଭାସୁଥିଲେ ମଧ୍ୟ ସଦାବେଳେ ସ୍ୱଜାତୀୟ ଶୁକ୍ରାଣୁ ଓ ଡିମ୍ୱାଣୁର ମିଳନ ହୋଇଥାଏ । ବିଷମ ଜାତୀୟ ମିଳନ ରୋଧ କରିବାରେ ପ୍ରକୃତିରେ ଏହା ଏକ ଅଭିନବ ପନ୍ଥା । ଚିହ୍ନା ପରିଚୟ ପର୍ବ ସରିଲେ ଏହା ଥରକେ ବହୁ ଶୁକ୍ରାଣୁ ମିଳିତ ହୋଇ, ଡିମ୍ୱାଣୁ ସହ ମିଳନ ଆଶାରେ ବାହାରି ପଡ଼ନ୍ତି ଓ ଡିମ୍ୱାଣୁଟିକୁ ଘେରି ଯାଆନ୍ତି । କିନ୍ତୁ ପ୍ରକୃତିର ନିୟମ, କେବଳ ଗୋଟିଏ ମାତ୍ର ଭାଗ୍ୟବାନ ଶୁକ୍ରାଣୁ ଡିମ୍ୱାଣୁ ସହ ମିଳିତ ହୋଇପାରେ । ଡିମ୍ୱାଣୁର ପ୍ରବେଶ ଦ୍ୱାର ଖୋଲା ହେବା ମାତ୍ରକେ ଗୋଟିଏ ଶୁକ୍ରାଣୁ ଡିମ୍ୱାଣୁ ଭିତରକୁ ପଶିଯାଏ ସଙ୍ଗେ ସଙ୍ଗେ ଫାଟକ ଚୀରତର ପାଇଁ ବନ୍ଦ ହୋଇଯାଏ । ପରେ ପରେ ଡିମ୍ୱାଣୁ ଚାରିପଟେ ଏକ ଦୁର୍ଭେଦ୍ୟ ପାଚେରୀ(Fertilization cone) ତିଆରି ହୋଇଯାଏ । ଅନ୍ୟ ଶୁକ୍ରାଣୁଗୁଡ଼ିକ ଯେଉଁମାନେ ଅନେକ ଆଶାରେ ଡିମ୍ୱାଣୁ ଚାରିପଟେ ଭିଡ଼ କରିଥାନ୍ତି ସେମାନେ ଶିଶୁପାଳ ହୋଇ କ୍ରମେ ନଷ୍ଟ ହୋଇଯାଆନ୍ତି ।

ଶୁକ୍ରାଣୁ ଓ ଡିମ୍ୱାଣୁ ମିଳନରୁ ଜାତ ପ୍ରଥମ କୋଷଟି ଜାଇଗୋଟ(zygote) ନାମରେ ପରିଚିତ । ଆପାତ ଦୃଷ୍ଟିରେ ସମସ୍ତ ପ୍ରାଣୀର ଜାଇଗୋଟ ପ୍ରାୟ ଏକପ୍ରକାର ଦେଖିବାକୁ ହେଲେ ହେଁ ଏଥିରେ ଥିବା କ୍ରୋମୋଜୋମ୍ ସଂଖ୍ୟା ଏବଂ ଜେନିକ୍ ମେକଅପ୍ (Genic make-up)ପ୍ରତ୍ୟେକ ପ୍ରାଣୀର ନିଜସ୍ୱ । ସନ୍ତାନ ପିତାମାତାଙ୍କଠାରୁ କ୍ରୋମୋଜୋମ ଜରିଆରେ ପିତାମାତାଙ୍କ ଗୁଣ ପାଇଥାଏ । ତାହାପରେ ମିଳନ ହୋଇଗଲେ ସେ ସମୟର ପରିବେଶ ଓ ଅନ୍ୟ ଅନେକ ଆନୁସଙ୍ଗିକ କାରଣକୁ ନେଇ ସନ୍ତାନ ତା'ର ନିଜସ୍ୱ ଗୁଣରେ ବଢ଼ିଚାଲେ । କହିବାକୁ ଗଲେ ପ୍ରାଣୀର ଚରିତ୍ର, ତା'ର ବ୍ୟବହାର, ତା'ର ସ୍ମୃତି ସମସ୍ତ କିଛି ଜାଇଗୋଟ ଗଠନ ବେଳରୁହିଁ ନିର୍ଦ୍ଧାରିତ ହୋଇଯାଏ ।

ଜାଇଗୋଟ ତିଆରି ହୋଇଗଲେ କିଛି କ୍ଷଣ ମଧ୍ୟରେ ଆରମ୍ଭ ହୁଏ କୋଷ ବିଭାଜନ । କ୍ରମେ ଗୋଟିଏ କୋଷରୁ ସୃଷ୍ଟି ହୁଏ ଶହ ଶହ କୋଷ । ପ୍ରଥମ ଅବସ୍ଥାରେ ସମସ୍ତ କୋଷଗୁଡ଼ିକ ଏକା ପ୍ରକାର ଦେଖିବାକୁ ହୋଇଥିଲେ ହେଁ ପରବର୍ତ୍ତୀ ସମୟରେ ବିଭେଦକରଣ (Differentiation) ପ୍ରକ୍ରିୟା ଯୋଗୁ ବିଭିନ୍ନ ପ୍ରକାରର କୋଷ ତିଆରି ହୁଅନ୍ତି । ଏହି କୋଷ ଏକତ୍ରିତ ହୋଇ ତନ୍ତୁ ଓ ଅଙ୍ଗମାନ ତିଆରି କରନ୍ତି ।

# ମୃତ୍ୟୁଞ୍ଜୟ ଆମିବା

ପ୍ରକୃତିର ନିୟମ ଓ ଖିଆଲ ବଡ଼ ବିଚିତ୍ର । ଏକକୋଷୀ ଆମିବା ଅମର ହୋଇଥିବା ସ୍ଥଳେ, ଅନ୍ୟ ସମସ୍ତ ପ୍ରାଣୀ ମୃତ୍ୟୁ କବଳରୁ ରକ୍ଷା ପଆନ୍ତି ନାହିଁ । ଅତିନିମ୍ନ ବର୍ଗର ହାଇଡ୍ରା ଭଳିଜୀବ ପରି କେଡ଼େ ସହଜରେ ନିଜ ଦେହର ଖଣ୍ଡିତ ଅଂଶରୁ ବଂଶ ବିସ୍ତାର କରିପାରୁଥିବାବେଳେ, ଉଚ୍ଚବର୍ଗର ପ୍ରାଣୀମାନଙ୍କ ବଂଶବୃଦ୍ଧି ଏକ ଜଟିଳ ପ୍ରକ୍ରିୟା ।

ଖାଲି ଆଖିକୁ ଦେଖାଯାଉ ନଥିବା ଏକକୋଷୀ ପ୍ରାଣୀମାନଙ୍କ ଜଗତ ବଡ଼ ଅଦ୍ଭୁତ । ଶରୀର କହିଲେ କେବଳ ଗୋଟିଏ ମାତ୍ର କୋଷ । କୋଷ ମଧ୍ୟରେ ସମ୍ପାଦିତ ହେଉଛି ଜୀବନର ସମସ୍ତ ପ୍ରକ୍ରିୟା । ବଂଶବୃଦ୍ଧି ପାଇଁ ଏକକୋଷୀ ପ୍ରାଣୀମାନେ ଯେତେ ତତ୍ପର ସେଭଳି ତତ୍ପରତା, ଅନ୍ୟ ପ୍ରାଣୀଠି ବିରଳ । ଲିଙ୍ଗୀୟ ଜନନର(Sexual reproduction) ପଥିକୃତ ଏହି ଏକକୋଷୀ ପ୍ରାଣୀ । ପ୍ରଥମେ କୋଷ ଅଭ୍ୟନ୍ତରରେ ଓ ପରେ ପରେ ସମଗ୍ର କୋଷକୁ ନେଇ ସ୍ତ୍ରୀ ଓ ପୁରୁଷ ଜନନ କୋଷର ବିଭକ୍ତିକରଣ ଏକକୋଷୀ ପ୍ରାଣୀଙ୍କଠି ଆରମ୍ଭ ହୋଇଥିଲା । ଲିଙ୍ଗୀୟ ଜନନ ଛଡ଼ା ବିଭିନ୍ନ ଧରଣର ଅଲିଙ୍ଗୀୟ ବଂଶବୃଦ୍ଧି ପଦ୍ଧତିରେ ମଧ୍ୟ ଏକକୋଷୀ ପ୍ରାଣୀ ପାରଙ୍ଗମ ।

ପ୍ରାଣୀ ବିଜ୍ଞାନୀମାନେ ପୂର୍ବେ କହୁଥିଲେ ଅକୋଷୀୟ (ବଞ୍ଚିବାର ସମସ୍ତ କାର୍ଯ୍ୟ ଯେଉଁଠି



ଆମିବା

ଗୋଟିଏ କୋଷ ମଧ୍ୟରେ ସମ୍ପାଦିତ ହୋଇଥାଏ) ଆମିବାର ମୃତ୍ୟୁ ନାହିଁ । ଏପରି ଏକ ମନ୍ତବ୍ୟ ଦେବାର କାରଣ ଆମିବା ତା'ର ଶରୀରକୁ ଏକରୁ ଦୁଇ ପରେ ଦୁଇରୁ ଚାରି ଏହି ପଦ୍ଧତିରେ ବଂଶବୃଦ୍ଧି କରିଥାଏ । ଅର୍ଥାତ୍ ମୂଳ ଆମିବାଟି ଦୁଇଟି ନୂତନ ଆମିବାରେ ପରିଣତ ହୁଏ ଫଳରେ ପ୍ରଥମର ଗୁଣ ପରବର୍ତ୍ତୀ ପ୍ରଜନ୍ମରେ ଅବିକୃତ ରୁହେ । ଅନ୍ୟ ପ୍ରାଣୀମାନଙ୍କଠି ପିତାମାତାଙ୍କ ଗୁଣ ସନ୍ତାନ ମଧ୍ୟରେ ପ୍ରକାଶ ପାଇଥିଲେ ହେଁ ସନ୍ତାନ କେବଳ ପିତା ବା ମାତାର ଗୁଣକୁ ବହନ କରେ ନାହିଁ । ଉଭୟଙ୍କ ଗୁଣ ମିଶି ସନ୍ତାନଠି ତାହା ନିଜସ୍ୱ ଢ଼ଙ୍ଗରେ ପ୍ରକାଶ ପାଇଥାଏ । ପ୍ରତ୍ୟେକ ପ୍ରାଣୀ କିଛି ଅଂଶରେ ତା'ର ସନ୍ତାନ ମଧ୍ୟରେ ବଞ୍ଚିରହେ ହେଲେ ଆମିବା ତା'ର ସମସ୍ତ 'ସତ୍ତା'କୁ ନେଇ ସନ୍ତାନ (?) ମଧ୍ୟରେ ଅଥବା ନିଜ ମଧ୍ୟରେ ବଞ୍ଚିରୁହେ ।

ଅନ୍ୟ ଏକ ସାଧାରଣ ଏକକୋଷୀ ପ୍ରାଣୀ ପାରାମେସିୟମ୍; ଗଡ଼ିଆ ପୋଖରୀର ଅପରିଷ୍କାର ପାଣିରେ ଏହି ପ୍ରାଣୀଟି ବହୁଳ ପରିମାଣରେ ଦେଖା ଯାଆନ୍ତି । ଦେଖିବାକୁ ଅନେକଟା ସ୍ଲିପର (ଚପଲ) ପରି, ଶରୀରର ଉପରିଭାଗ ଛୋଟ ଛୋଟ କେଶ ବା ସିଲିଆ ଦ୍ୱାରା ଆବୃତ । ସିଲିଆଗୁଡ଼ିକ ପାରାମେସିୟମକୁ ଯାତାୟତ ଓ ଖାଦ୍ୟ ଆହରଣରେ ସାହାଯ୍ୟ କରିଥାନ୍ତି । ପାରାମେସିୟମ କୋଷ ମଧ୍ୟରେ ଗୋଟିଏ ଛୋଟ ଓ ଗୋଟିଏ ବଡ଼ ନ୍ୟୁକ୍ଲିଅସ (ନ୍ୟଷ୍ଟି) ରହିଛି । ଛୋଟ ନ୍ୟୁକ୍ଲିଅସଟିର କାର୍ଯ୍ୟ ଜନନ ସମ୍ବନ୍ଧୀୟ ବଡ଼ଟି ବଞ୍ଚିବା ଲାଗି ଅନ୍ୟ ଆନୁସଙ୍ଗିକ କାର୍ଯ୍ୟ ତୁଲାଇଥାଏ । ବଂଶବୃଦ୍ଧି ବେଳେ ଦୁଇଟି ପାରାମେସିୟମ ପରସ୍ପର ନିକଟକୁ ଆସନ୍ତି । ସେମାନଙ୍କ ମଧ୍ୟରେ ଗୋଟିଏ ଯୋଗାଯୋଗ ସେତୁ ତିଆରି ହୁଏ । ଏହି ସେତୁ ଉପର ନେଇ ଛୋଟ ନ୍ୟୁକ୍ଲିଅସ ସ୍ଥାନ ପରିବର୍ତ୍ତନ କରନ୍ତି । ଆବଶ୍ୟକ ହେଲେ ଗୋଟିଏ କୋଷ ମଧ୍ୟରେ ଗୁଣ ଅଦଳବଦଳ ହୋଇଥାଏ, ଏହି ପ୍ରକ୍ରିୟାଟିକୁ ଇଂରାଜୀରେ ଅଟୋଗ୍ୟାମୀ(Autogamy) କୁହାଯାଏ । ଅନେକ ମନେ କରନ୍ତି ଅଟୋଗ୍ୟାମୀ ପ୍ରକିୟାଟି ଲିଙ୍ଗୀୟ ଜନନ ଓ ଅଲିଙ୍ଗୀୟ ଜନନର ମଧ୍ୟବର୍ତ୍ତୀ ଅବସ୍ଥା ।

ଅନେକ ଏକକୋଷୀ ପ୍ରାଣୀ ପରଭୋଜୀ(Parasite) । ମ୍ୟାଲେରିଆ ଜ୍ୱର କରାଉଥିବା ପ୍ଲାସମୋଡ଼ିୟମ ଉଭୟ ଲିଙ୍ଗୀୟ ଓ ଅଲିଙ୍ଗୀୟ ଜନନ ଦ୍ୱାରା ବଂଶବୃଦ୍ଧି କରିଥାଏ । ପ୍ଲାସମୋଡ଼ିୟମ ଯେତେବେଳେ ତାର ଭୋଜଦାତା ମଣିଷ ଶରୀର ମଧ୍ୟରେ ରୁହେ ଅଲିଙ୍ଗୀୟ ଜନନ ପ୍ରକ୍ରିୟାରେ ବଂଶବୃଦ୍ଧି କରେ ପୁଣି ଯେବେ ମାଈ ଆନୋଫିଲିସ୍ ମଶା ଶରୀରରେ ରୁହେ ସେତେବେଳେ ଲିଙ୍ଗୀୟ ଓ ଅଲିଙ୍ଗୀୟ ଉଭୟ ପ୍ରକ୍ରିୟାରେ ବଂଶବୃଦ୍ଧି କରିଥାଏ ।

ଜୀବନ ସୃଷ୍ଟିର ଉଷାଲଗ୍ନରୁ ଏକକୋଷୀ ପ୍ରାଣୀମାନେ ପରିବେଶ ସହ କଠୋର ସଂଗ୍ରାମ କରି ବଞ୍ଚି ରହିଛନ୍ତି । ଏମାନଙ୍କ ଅନେକ ପରେ ପୃଥିବୀକୁ ଆସି କେତେ ପ୍ରାଣୀ କୁଆଡ଼େ ମରି ହଜି ଗଲେଣି ମାତ୍ର ଏକକୋଷୀ ପ୍ରାଣୀମାନେ ଆଜିଯାଏଁ ବଞ୍ଚି ରହିଛନ୍ତି ତା'ର ଅନ୍ୟତମ କାରଣ ସେମାନଙ୍କ ସଫଳ ବଂଶବୃଦ୍ଧି ।

# ଏକରୁ ଅନେକ

ଡାରଉଇନଙ୍କ ବିବର୍ତ୍ତନବାଦ ତତ୍ତ୍ୱ ପ୍ରକାଶିତ ହେଲା ପରେ, ଜୀବଜନ୍ତୁମାନଙ୍କ ପରସ୍ପର ମଧ୍ୟରେ ଥିବା ସମ୍ପର୍କକୁ ଘେନି ନୂତନ ଦୃଷ୍ଟିକୋଣରୁ ଚିନ୍ତା ଭାବନା ଆରମ୍ଭ ହେଲା । ଏହି ସମୟରେ ବିଜ୍ଞାନୀମାନେ ବିବର୍ତ୍ତନ ସିଡ଼ିର କେଉଁ ପାହାଚରେ କିଏ ରହିବ, ତା'ର ନିକଟ ଆତ୍ମୀୟ କିଏ, ତା'ର ଅଗ୍ରଜ ବା ଅନୁଜ କିଏ, ଏହି ସମସ୍ତ ପ୍ରସଙ୍ଗ ଚିନ୍ତା କଲାବେଳେ କେତେକ ସମସ୍ୟା ଦେଖା ଦେଲା । ପ୍ରଥମ ପ୍ରଶ୍ନଟି ପ୍ରାଣୀ ଏକକୋଷୀରୁ ବହୁକୋଷୀ ହେଲା କିପରି ? କେଉଁ ମନ୍ତ୍ରବଳରେ ଏକକୋଷୀ ପ୍ରୋଟୋଜୋଆ ନିଜର ସ୍ୱାଧୀନ ଓ ବେପରୱା ଜୀବନ ଛାଡ଼ି ବହୁକୋଷୀ ଛିଦ୍ରାଳ ସ୍ପଞ୍ଜ ବା ନିମ୍ନମାନର ସିଲେନଟରେଟା ଆଡ଼କୁ ମୁହେଁଇଲା ।

୧୮୬୬ ଖ୍ରୀଷ୍ଟାବ୍ଦରେ ପ୍ରକାଶିତ ଅରନେଷ୍ଟ ହେକ୍‌ଲଙ୍କର ଏକ ତତ୍ତ୍ୱ ଯାହା 'ବାୟୋଜେନେଟିକ୍ ଲ' ନାମରେ ପରିଚିତ ସମାଧାନର ଏକ ନୂତନ ବାଟ ଫିଟେଇ ଦେଲା ।



ବହୁକୋଷୀ ସ୍ପଞ୍ଜ



ବହୁକୋଷୀ ଛିଦ୍ରାଳ

ବୈଜ୍ଞାନିକ ପରିଭାଷାରେ ହେକେଲଙ୍କ ତତ୍ତ୍ୱ କହୁଛି 'ଅଣ୍ଟୋଜେନି ରିକ୍ୟାପିଟ୍ୟୁଲେଟ ଫାଇଲୋଜେନି', ଅର୍ଥାତ୍ ଯେ କୌଣସି ପ୍ରାଣୀ ତା'ର ବୃଦ୍ଧି ବେଳେ ତା'ର ସମଗୋତ୍ରୀୟ ପ୍ରାଣୀକୁ ମନେ ପକାଏ । ଉଦାହରଣ ସ୍ୱରୂପ ବେଙ୍ଗ, ତାହାର ବୃଦ୍ଧିର(development) ପ୍ରଥମ ଧାପରେ ଗୋଟିଏ ଯୁଗ୍ମଜ (ଆଦିକୋଷ) ବା ଜାଇଗୋଟ ଭାବରେ ଆତ୍ମପ୍ରକାଶ କରେ । ଜାଇଗୋଟଟି ଗୋଟିଏ ଏକକୋଷୀ ପ୍ରାଣୀର ପ୍ରତିରୂପ । ବୃଦ୍ଧିର ଦ୍ୱିତୀୟ ଧାପରେ ଜାଇଗୋଟଟି ବିଭାଜିତ ହୁଏ, ବହୁକୋଷ ଏକତ୍ରିତ ହୋଇ ଗୋଟିଏ ଆତ ପରି ଦେଖାଯାଆନ୍ତି ଯାହାକୁ ଆମେ ମରୁ୍ୟଲା କହିଥାଉ, ମରୁ୍ୟଲାର ବୃଦ୍ଧି ହୋଇ ହୁଏ ବ୍ଲାଷ୍ଟୁ୍ୟଲା ପରେ କୋଷ ବିଭେଦକରଣ ପ୍ରକ୍ରିୟା ଆରମ୍ଭ ହେଲାରୁ ଏହା ଗ୍ୟାସଟ୍ରୁ୍ୟଲାରେ ପରିଣତ ହୁଏ । ଗ୍ୟାସଟ୍ରୁ୍ୟଲାଟିର ଆକାର ଓ ଏଥିରେ ହୋଇଥିବା ବିଭିନ୍ନ ଧରଣର କୋଷ ମନେ ପକେଇ ଦିଏ ସିଲେନଟରନ ଜାତୀୟ ହାଇଡ୍ରାକୁ । ଗ୍ୟାସଟ୍ରୁ୍ୟଲା ପରିପକ୍ୱ ହେଲା ଉତ୍ତାରୁ ଶରୀରର ବିଭିନ୍ନ ଅଙ୍ଗ ଦେଖାଦିଏ । ଶେଷରେ ବେଙ୍ଗଫୁଲା ମାଛପରି ପାଣିରେ ପହଁରେ । କିଛି ଦିନ ମାଛ ପରି ଜୀବନ ବିତେଇଲା ପରେ ବେଙ୍ଗଫୁଲା ପୂର୍ଣ୍ଣବେଙ୍ଗରେ ରୂପାନ୍ତରିତ ହୁଏ । କେବଳ ବେଙ୍ଗ କାହିଁକି ଉଚ୍ଚରେ ମଣିଷର ବୃଦ୍ଧି ଯଦି ଲକ୍ଷ୍ୟ କରାଯାଏ ତେବେ ମଣିଷର ଭ୍ରୁଣ ମଧ ତା'ର ବୃଦ୍ଧି ବେଳେ ଏକକୋଷୀ ପ୍ରୋଟୋଜୋଆ, ମାଛ, ସରୀସୃପ, ମାଙ୍କଡ଼ ଆଦିକୁ ମନେ ପକାଏ ।

ଯେ କୌଣସି ଉଚ୍ଚତର ପ୍ରାଣୀର ବୃଦ୍ଧି ବେଳେ ଏକ ଧାପ ହେଉଛି ତା'ର ମରୁ୍ୟଲାବସ୍ଥା ବେଳେ ବିଭାଜିତ କୋଷଗୁଡ଼ିକ, ଏକ ଅଦୃଶ୍ୟ ଶକ୍ତି ବଳରେ ପରସ୍ପର ସହ ଆକର୍ଷିତ ହୋଇଥାଆନ୍ତି । ହେକେଲଙ୍କ ନିୟମାନୁସାରେ ପ୍ରାଣୀ ଯେବେ ଏକରୁ ବହୁ ହୋଇଛି, ସମଭାବାପନ୍ନ ଅଥବା ସମଜାତୀୟ କୋଷଗୁଡ଼ିକ ପ୍ରଥମେ ଏକତ୍ରିତ ହୋଇଛନ୍ତି ଏକ ବନ୍ଧନରେ ବାନ୍ଧି ହୋଇଛନ୍ତି । ଏହି ଭଳି ଏକ ପ୍ରାଣୀ ଭଲଭକ୍ସ ଗ୍ଲୋବେଟର(Volvox globator) । ଭଲଭକ୍ସର ବିଚିତ୍ର ଚରିତ୍ର ଉଭୟ ପ୍ରାଣୀ ଓ ଉଦ୍ଭିଦ ବିଜ୍ଞାନୀମାନଙ୍କ ପାଇଁ ଏକ ସମସ୍ୟା । ଉଭୟଦଳ ଦାବୀ କରନ୍ତି ଭଲଭକ୍ସ ସେମାନଙ୍କ ଗୋତ୍ରୀୟ । ଭଲଭକ୍ସକୁ ଲକ୍ଷ୍ୟ କରି ଶହେ ବର୍ଷ ତଳେ ବ୍ଲସ ଲେଖିଥିଲେ...ଏହି କୋଷଗୁଡ଼ିକ ଭିତରେ ରହିଛି ଏକ ସୁନ୍ଦର ସାମାଜିକ ବନ୍ଧନ । ପରସ୍ପର ପ୍ରତି ଆକର୍ଷିତ ହୋଇ ଗୋଠରେ ରହିଲା ପରି ଏକତ୍ରିତ ରହିଛନ୍ତି । ଏକତ୍ରିତ ହୋଇ ରହିବା ପରେ ସେମାନେ ବଞ୍ଚିବା ପାଇଁ ଆବଶ୍ୟକ ବିଭିନ୍ନ କାର୍ଯ୍ୟକୁ ନିଜ ଭିତରେ ବାଣ୍ଟି ନେଲେ । ଦଳେ ଜନନ କାର୍ଯ୍ୟରେ ନିଜକୁ ନିୟୋଜିତ କଲେ ଆଉ ଦଳେ ଖାଦ୍ୟ ଆହରଣ, ଆତ୍ମରକ୍ଷା ଆଦି କାର୍ଯ୍ୟକୁ ନିଜ ଭିତରେ ବାଣ୍ଟି ନେଲେ । ଜୀବନ ସଂଗ୍ରାମର ବୋଝ ଆଉ ଜଣକ ଉପରେ ରହିଲା ନାହିଁ ।

କୋଷ ବିଭେଦକରଣ (Differentiation) ଏବଂ ସେଥିସଙ୍ଗେ କର୍ଯ୍ୟ ବଣ୍ଟନ ପ୍ରକ୍ରିୟା ଆରମ୍ଭ ହେବା ପରେ ପରେ-ମୃତ୍ୟୁ ଆସି ପହଞ୍ଚିଗଲା । ମୃତ୍ୟୁର ଆଗମନ, ଜୀବନ ପାଇଁ ଦୁଇଟି ସନ୍ଦେଶ ନେଇ ଆସିଲା । ମୃତ୍ୟୁ ପୂର୍ବରୁ ପ୍ରାଣୀ ଚେଷ୍ଟା କଲା ତା'ର ଗୁଣ ପରବର୍ତ୍ତୀ ପ୍ରଜନ୍ମକୁ ପହଞ୍ଚିଯାଉ; ଯାହାର ଆବଶ୍ୟକ ନାହିଁ ଯିଏ ଅକ୍ଷମ, ବୃଦ୍ଧ, ଜୀବନକୁ ଯାହାର ଦେବାର କିଛି ନାହିଁ ସେ ଅପସରି ଯାଉ ।

*( ଏହି ପ୍ରସଙ୍ଗରେ ଦେଖାଯାଇଛି ନିମ୍ନତର ପ୍ରାଣୀ ହେଉ ବା ମଣିଷ ହେଉ ଯେ ପର୍ଯ୍ୟନ୍ତ ପ୍ରାଣୀ ବଂଶବୃଦ୍ଧି କରିବାର କ୍ଷମତା ରଖୁଛି ପ୍ରକୃତି ସେ ଯାଏ ତାକୁ ଆବୋରି ରହୁଛି । ବଂଶବୃଦ୍ଧି କ୍ଷମତା ହ୍ରାସ ପାଇଲେ ବା ଲୋପ ପାଇଗଲେ ପ୍ରକୃତିର ତାହା ପ୍ରତି କୌଣସି ଆଦର ରହୁନାହିଁ । ମଣିଷ ସ୍ତ୍ରୀର ଗର୍ଭାଶୟ ଯେ ପର୍ଯ୍ୟନ୍ତ କାର୍ଯ୍ୟକ୍ଷମ ରହୁଛି ନିର୍ଦ୍ଦିଷ୍ଟ କିଛି ହରମୋନର କ୍ଷରଣ ସ୍ତ୍ରୀଟିକୁ ଅନେକ ରୋଗ ଦାଉରୁ ରକ୍ଷା କରୁଛି । ଗର୍ଭାଶୟ ଅକ୍ଷମ ହୋଇଗଲେ ସ୍ତ୍ରୀଟି ବିଭିନ୍ନ ରୋଗର ଶୀକାର ହେଉଛି । )*

ଭଲଭକ୍ସ ଯଦି ମରୁ୍ୟଲାବସ୍ଥା ସହ ତୁଳନୀୟ ତେବେ ସଞ୍ଜ ଜାତୀୟ ଛିଦ୍ରାଳ ପ୍ରାଣୀକୁ ଗ୍ୟାସଟ୍ର୍ୟୁଲାବସ୍ଥା ସହ ତୁଳନା କରି ହେବ । ପୃଥିବୀରେ ପାଞ୍ଚ ହଜାରରୁ ଅଧିକ ବିଭିନ୍ନ ପ୍ରକାରର ସଞ୍ଜ ରହିଛି । ଅଧିକାଂଶ ସଞ୍ଜ ସମୁଦ୍ରର ଲୁଣିଆ ପାଣିରେ ରହୁଥିବା ବେଳେ କେତେକ ସଞ୍ଜ ମଧୁର ପାଣିରେ ରହନ୍ତି । ସଞ୍ଜ ଉଭୟଲିଙ୍ଗୀ । ଉଭୟ ପୁଂଜନନ କୋଷ ଶୁକ୍ରାଣୁ ଓ ସ୍ତ୍ରୀ ଜନନ କୋଷ ଡିମ୍ବାଣୁର ଗୋଟିଏ ଶରୀରରୁ ଉତ୍ପନ୍ନ ହୋଇଥାନ୍ତି, ହେଲେ ଗୋଟିଏ ଶରୀରରୁ ଉତ୍ପନ୍ନ ଶୁକ୍ରାଣୁ ଓ ଡିମ୍ବାଣୁର ମିଳିତ ହେବା ସମ୍ଭାବନା ନାହିଁ କହିଲେ ଚଳେ; କାରଣ ଶୁକ୍ରାଣୁ ଓ ଡିମ୍ବାଣୁ ବିଭିନ୍ନ ସମୟରେ ପରିପକ୍ୱ ହୋଇଥାନ୍ତି । ଶୁକ୍ରାଣୁ ତିଆରି ହୋଇ ସାରିଲା ପରେ ଡିମ୍ବାଣୁ ତିଆରି ହୁଏ । ଲିଙ୍ଗୀୟଜନନ ସାଙ୍ଗକୁ ସଞ୍ଜ ଆବଶ୍ୟକ ହେଲେ ଅଲିଙ୍ଗୀୟ ଜନନ ମାଧ୍ୟମରେ ବଂଶବୃଦ୍ଧି କରିଥାଏ । ପରୀକ୍ଷା କରି ଦେଖାଯାଇଛି ଯେ ଗୋଟିଏ ସଞ୍ଜକୁ ଯଦି ଛାଙ୍କୁଣିରେ ପେଶୀ ଦିଆଯାଏ ଓ ଛାଙ୍କୁଣୀର ଅପରପଟୁ ସଞ୍ଜର କ୍ଷୁଦ୍ର କ୍ଷୁଦ୍ର ଅଂଶଗୁଡ଼ିକୁ ପାଣିରେ ଭସେଇ ଦିଆ ହୁଏ ତେବେ ସଞ୍ଜ କୋଷ ଆମିବା ପରି ଚାଲବୁଲ କରେ, ଆବଶ୍ୟକ ହେଲେ କୋଷଗୁଡ଼ିକ ପରସ୍ପର ଏକତ୍ରିତ ହୋଇ ନୂତନ ସଞ୍ଜ ଆକାର ନିଏ ଅଥବା ପ୍ରତ୍ୟେକ ଖଣ୍ଡ ବୃଦ୍ଧିପ୍ରାପ୍ତ ହୋଇ ନୂତନ ସଞ୍ଜରେ ପରିଣତ ହୁଏ ।

ରାବଣର ଦଶମୁଣ୍ଡ ଥିଲା କି ନାହିଁ ତାହା ଶାସ୍ତ୍ରକାରମାନେ କହିବେ । ହେଲେ ଏକ ନାଳୀ ଦେହୀ ହାଇଡ୍ରା ଦରକାର ପଡ଼ିଲେ ଦଶ କାହିଁକି ତା'ଠାରୁ ଅଧିକ ମୁଣ୍ଡ ବଡିଂ ବା କୋରକୋଦ୍‌ଗମ ପ୍ରକ୍ରିୟାରେ ନିଜ ଶରୀର ଚାରିପଟେ ତିଆରି କରିପାରେ । ପରେ ପ୍ରତ୍ୟେକ ମୁଣ୍ଡ ଥିବା କ୍ଷୁଦ୍ର କ୍ଷୁଦ୍ର ହାଇଡ୍ରା ମୂଳ ଶରୀରରୁ ଅଲଗା ହୋଇ ନୂତନ ହାଇଡ୍ରା ରୂପରେ ବଢ଼ନ୍ତି । ହାଇଡ୍ରା, ଏକନାଳୀ ପ୍ରାଣୀ ସିଲେନଟେରାଟା ଜାତୀୟ ପ୍ରାଣୀମାନଙ୍କ ସ୍ଥାନ ଛିଦ୍ରାଳ ପ୍ରାଣୀଠାରୁ ଗୋଟିଏ ଧାପ ଉପରେ ।

କାର୍ଯ୍ୟ ବଣ୍ଟନ (Division of Labour) ପ୍ରକ୍ରିୟାରେ ପଥିକୃତ ଯଦିଓ ସଞ୍ଜ ଜାତୀୟ କେତେକ ଛିଦ୍ରାଳ ପ୍ରାଣୀ, ହେଲେ ଏହି ପ୍ରକ୍ରିୟାକୁ ପ୍ରଥମେ ସ୍ୱୟଂ ସମ୍ପୂର୍ଣ୍ଣ ଯଦି କେହି କରିଛି ତେବେ ସେ ହେଉଛି ସିଲେନଟେରାଟା ବର୍ଗର ହାଇଡ୍ରୋଜୋଆ ନାମକ ଦଳର ବଂଶବୃଦ୍ଧି ପାଇଁ ରହିଛି ମେଡ୍ୟୁସା ନାମକ ଜନନ ସଂସ୍ଥା ବଞ୍ଚିବାର ଅପର କାର୍ଯ୍ୟ କରୁଛି ପଲିପ ନାମକ ଆର ଏକ ସଂସ୍ଥା । ଏଥିରୁ ସହଜରେ ଅନୁମେୟ ପ୍ରକୃତି ବଂଶବୃଦ୍ଧି ସଂସ୍ଥାକୁ । ଅପର କୌଣସି ସଂସ୍ଥା ସହ ନ ରଖି ଏକ ସ୍ୱୟଂ ସମ୍ପୂର୍ଣ୍ଣ ସଂସ୍ଥା କରିବା ପାଇଁ ଧୀରେ ଧୀରେ ଆଗେଇଛି । ବିବର୍ତ୍ତନ ସିଡ଼ିରେ ପ୍ରାଣୀ ଯେତେ ଉପରକୁ ଚଢ଼ିଛି ସେଇ ମୁତାବକ ତା'ର ବଂଶବୃଦ୍ଧି କ୍ରିୟା ମଧ୍ୟ ଉନ୍ନତ ହୋଇଛି ।

# ରକ୍ତ ଶୋଷକର ନିବିଡ଼ ଆଲିଙ୍ଗନ

ମଣିଷ ଯଦି କୌଣସି ପ୍ରାଣୀକୁ ଦେଖିବା ମାତ୍ରେ ନାସିକା କୁଞ୍ଚନ କରେ, ତେବେ ସେଇ ପ୍ରାଣିଟି କୃମି । ମଣିଷ ସହ କୃମିର ସମ୍ବନ୍ଧ ପ୍ରାଚୀନ କାଳରୁ । ତେବେ ଠିକ୍ କେଉଁ ଅମଳରୁ କୃମି ମଣିଷ ଶରୀରକୁ ତା'ର ବାସଭୂମି କଲା ତା'ର ହିସାବ ଆଜି ମଣିଷ ପାଖରେ ନାହିଁ । କୃମି ପାଇଁ ମଣିଷ ଶରୀର ପରି ବାସପୋଯୋଗୀ ସ୍ଥାନ ଆଉ ଅଛି କି ନାହିଁ କଳନା କରିବା କଷ୍ଟ । କୃମି ଭିତରୁ କିଏ ମଣିଷ ପେଟରେ, କିଏ ମାଂସପେଶୀରେ କିଏ ଗୋଡ଼ ଆଙ୍ଗୁଠି ସନ୍ଧିରେ ପୁଣି କିଏ ଆଖିରେ ମଧ୍ୟ ରହିଥାନ୍ତି । ସବୁ କୃମି ଯେ ପରଭୋଜୀ, ତାହା ନୁହେଁ । ଅନେକ ସ୍ୱାବଲମ୍ବୀ ମଧ୍ୟ ଥିଛନ୍ତି । ପରଭୋଜୀ କୃମିଙ୍କ ଏକ ବିଶେଷ କ୍ଷମତା ତା'ର ବଂଶବୃଦ୍ଧି କ୍ଷମତା । ଜୀବନର ଅଧିକାଂଶ କାର୍ଯ୍ୟ ଯେବେ ଭୋଜଦାତା କୃପାରୁ ସମ୍ପାଦିତ ହୋଇଗଲା କୃମି ତା'ର ସମସ୍ତ ଶକ୍ତି ନିୟୋଗ କଲା ବଂଶବୃଦ୍ଧି କାର୍ଯ୍ୟରେ । ଜଣେ କୃମି ବିଶାରଦ ଥଟ୍ଟାରେ କହିଥିଲେ ପରଭୋଜୀ କୃମିର କେବଳ ଗୋଟିଏ କାମ, ତାହା ହେଉଛି ବଂଶବୃଦ୍ଧି । କୃମି କୁଳରେ ଦେଖାଯାଉଥିବା ଜନନ ବୈଚିତ୍ର ଅନ୍ୟ କୌଣସି ପ୍ରାଣୀଠି ଦେଖାଯାଏ ନାହିଁ ।



ସିଷ୍ଟୋସୋମା ହିମାଟୋବିୟମ ଚିରକାଳ ରତି

ସିଷ୍ଟୋସୋମା ହିମାଟୋବିୟମ (Schistosoma hematobium) କବଳରେ ପଡ଼ି କେତେ ଲୋକ ଯେ ପ୍ରାଣ ହରେଇଛନ୍ତି ତା'ର ହିସାବ ନାହିଁ । ରକ୍ତଶୋଷକ ଏହି କୃମିଟିର ସ୍ତ୍ରୀ ଓ ପୁରୁଷ ସଦାବେଳେ ଯୋଡ଼ି ହୋଇ ମଣିଷର ଯକୃତ ବା ରକ୍ତରେ ରହନ୍ତି । ୧୮୫୧ ମସିହାରେ ଥିଓଡ଼ର ବିଲହର୍ସ ନାମକ ଜଣେ ଜର୍ମାନ ଡାକ୍ତର ଏହି କୃମିଟିର ଜୀବନଚକ୍ର ଅଧ୍ୟୟନ କରିଥିଲେ । ସିଷ୍ଟୋସୋମାର ବିଶେଷତ୍ୱ- ପୁରୁଷ କୃମିଟି ନିଜ ଶରୀରକୁ ଗୋଟିଏ ବାକ୍ସ ପରି କରି ତା' ଭିତରେ ସ୍ତ୍ରୀକୁ କେଡ଼େ ଶ୍ରଦ୍ଧାରେ ଜାବୁଡ଼ି ଧରିଥାଏ । ମିଳନ ସରିଗଲେ ସ୍ତ୍ରୀ ନିଜକୁ ପୁରୁଷର ଆଲିଙ୍ଗନରୁ ମୁକ୍ତ କରାଏ ଓ ଶିରା ମଧ ଦେଇ ମଳଦ୍ୱାର ବା ମୂତ୍ରାଶୟ ନିକଟକୁ ପଳେଇ ଆସେ ଏବଂ ସେଇଠାରେ ଅଣ୍ଡା ଦିଏ । ଅଣ୍ଡା ସଂଖ୍ୟା ବହୁତ ହୋଇଥିବାରୁ ତାହା ଶିରା ମଧ୍ୟରେ ରକ୍ତ ସଞ୍ଚାଳନରେ ବାଧା ସୃଷ୍ଟିକରେ । ଫଳରେ ଶିରା ଫୁଲି ଫାଟିଯାଏ । ଏହି ସମୟରେ ରୋଗୀର ଝାଡ଼ା ଓ ପରିସ୍ରାରେ ରକ୍ତ ପଡ଼େ । ଝାଡ଼ା ପରିସ୍ରା ସହ ଅଣ୍ଡାଗୁଡ଼ିକ ଶରୀର ବାହାରକୁ ଚାଲିଆସେ । ପଦାରେ ଅଣ୍ଡା ଫୁଟି ସେଥିରୁ ମିରାସିଡ଼ିୟମ ନାମକ ଏକ ଲାର୍ଭା ବାହାରେ । ଏହି ଲାର୍ଭା ସୁଯୋଗ ପାଇଲା ମାତ୍ରକେ ଗେଣ୍ଡା ଶରୀର ଭିତରକୁ ପ୍ରବେଶ କରିଥାଏ ଓ ଗେଣ୍ଡା ଶରୀର ଭିତରେ ସରକାରିଆ ନାମକ ଏକ ଲାର୍ଭାରେ ପରିଣତ ହୁଏ । ସରକାରିଆ ପରେ ଗେଣ୍ଡା ଶରୀରକୁ ବାହାରି ମଇଳା ପାଣି, ବିଲ, ପୋଖରୀ ହୁଡ଼ା ଆଦିରେ ମଣିଷ ପାଇଁ ଅପେକ୍ଷା କରେ । ସୁଯୋଗ ପାଇଲେ ଗୋଡ଼ ନଖ କଣ ବା କଟା ଘା ମଧ୍ୟଦେଇ ପୁଣି ମଣିଷ ଶରୀର ମଧ୍ୟକୁ ପ୍ରବେଶ କରିଥାଏ ।

କୃମି ଜୀବନଚକ୍ରର ବିଶେଷତ୍ୱ- ଏହା କେବଳ ଗୋଟିଏ ଭୋଜଦାତା ଉପରେ ସଦାବେଳେ ନିର୍ଭର କରେ ନାହିଁ, ଭୋଜଦାତା ଉପରେ ଜୀବନ ନିର୍ଭର କରୁଥିବାରୁ କେବଳ ଗୋଟିଏ ଭୋଜଦାତା ଉପରେ ସେ ସମ୍ପୂର୍ଣ୍ଣ ଆସ୍ଥା ରଖିପାରେ ନାହିଁ । ତେଣୁ ନିଜ ଭାବି ବଂଶଜମାନଙ୍କୁ ସେ ନୂତନ ଭୋଜଦାତା ଆଶ୍ରୟରେ ରଖିବାକୁ ସଦାବେଳେ ଚେଷ୍ଟା କରେ । ଏଥିପାଇଁ ବେଳେବେଳେ ଏକ ସହକାରୀ ଭୋଜଦାତାର ସାହାଯ୍ୟ ମଧ ନେଇଥାଏ । ନୂତନ ଭୋଜଦାତା ସନ୍ଧାନ ପାଇବାର ଠିକ୍ ଠିକଣା ନଥିବାରୁ ଅନେକ ପଥ ମଝିରେ ମରିହଜି ଯାଆନ୍ତି । ଏଣୁ କୃମି ଶହ ଶହ ସଂଖ୍ୟାରେ ଅଣ୍ଡା ନେଇ ପରବର୍ତ୍ତୀ ପ୍ରଜନ୍ମକୁ ସୁରକ୍ଷିତ କରିଥାଏ ।

# ସ୍ତ୍ରୈଣ ବୋନେଲିଆ

ମଣିଷ ଓ ଅନ୍ୟ ଇତର ପ୍ରାଣୀ ଭିତରେ ଗୋଟାଏ ବଡ଼ ଫରକ ହେଉଛି ତା'ର ବଞ୍ଚିବାର ଉଦ୍ଦେଶ୍ୟ । ଆହାର, ନିଦ୍ରା ଓ ମୈଥୁନ । ଯେବେ ଇତର ପ୍ରାଣୀର ବଞ୍ଚିବାର ଉଦ୍ଦେଶ୍ୟ ସେଠି ମଣିଷର ବଞ୍ଚିବାର ଉଦ୍ଦେଶ୍ୟ ଅନ୍ୟ କିଛି । କର୍ମକୁ ନେଇ ଯଦି ବଞ୍ଚିବାର ଉଦ୍ଦେଶ୍ୟର ମୂଲ୍ୟାଙ୍କନ କରାହୁଏ ତେବେ ଏହା ପ୍ରତ୍ୟେକ ଲୋକ ପାଇଁ ଭିନ୍ନ ହେଲେ ପ୍ରକୃତି ପାଇଁ ପ୍ରାଣୀର ବଞ୍ଚିବାର ଉଦ୍ଦେଶ୍ୟ ଗୋଟିଏ ଏବଂ ତାହା ହେଉଛି ବଂଶବୃଦ୍ଧି । ବଂଶବୃଦ୍ଧିରେ ଯେଉଁ ପ୍ରାଣୀ ଯେତେ ସକ୍ଷମ ହୋଇଛି ସେଇ ପ୍ରାଣୀ ସେତିକି ଅଧିକ ଦିନ ପୃଥିବୀରେ ରାଜୁତି କରିଛି । ବଂଶବୃଦ୍ଧିରେ ଉଭୟ ପୁରୁଷ ଓ ସ୍ତ୍ରୀର ଅବଦାନ ସମପରିମାଣର ହୋଇଥିଲେ ହେଁ, ପୁରୁଷର କାମ ପ୍ରଧାନତଃ ଶୁକ୍ରାଣୁ ଯୋଗାଣ ବାକି ସମସ୍ତ କାର୍ଯ୍ୟ ସ୍ତ୍ରୀକୁ ହିଁ କରିବାକୁ ହୋଇଥାଏ । କୃମି ସମାଜରେ ପୁରୁଷର ଉପସ୍ଥିତି ନଗନ୍ୟ । ଅନେକ କ୍ଷେତ୍ରରେ ପୁରୁଷ ତା'ର ଉପସ୍ଥିତି କାଏମ ରଖେ ସ୍ତ୍ରୀ ଶରୀରକୁ ଆଶ୍ରୟ କରି ଏକ ପରଜୀବି ଭାବରେ ।




ବୋନେଲିଆ

ଆଳୁ, ରାଇ, ଗହମ ଆଦି ଗଛରେ ରହୁଥିବା ଇଲକୃମିର (Eel Worm) ପରୁଷ ଓ ସ୍ତ୍ରୀକୁ ବାହାରୁ ଦେଖିଲେ ସହଜରେ ବାରି ହୁଏ । ପୁରୁଷ କୃମିର ଲାଞ୍ଜ ନିକଟରେ ରହିଛି କଣ୍ଟାଚାମଚ ପରି ଦେଖିବାକୁ ମାଂସଳ ବିଣ୍ଡିଟିଏ । ମିଳନ ସମୟରେ ପୁରୁଷ ତା'ର ମାଂସଳ ବିଣ୍ଡି ସଦୃଶ କୃତ୍ରିମ ଜନନାଙ୍ଗଟିକୁ ସ୍ତ୍ରୀ କୃମି ଶରୀର ମଧ ଭାଗରେ ଥିବା ଗହ୍ୱରରେ ପୂରେଇ ଦିଏ । ମିଳନ ପରେ ପରେ ପୁରୁଷଟି ମରିଯାଏ । ଏଣେ ସ୍ତ୍ରୀ ଗହ୍ୱର ପ୍ରବେଶର ଆକାର କ୍ରମେ ବଢ଼ିବାକୁ ଲାଗେ । ଶେଷରେ ଏହା ଗୋଟିଏ କାଗଜି ଲେମ୍ବୁ ପରି ଦେଖିବାକୁ ହୋଇଯାଏ । କାଗଜି ଲେମ୍ବୁ ସଦୃଶ ବସ୍ତୁଟି ଅସଲରେ ସ୍ତ୍ରୀ ଜନନାଙ୍ଗ । ଜନନାଙ୍ଗର ବୃଦ୍ଧି ସାଙ୍ଗକୁ ମୂଳ ଶରୀରଟି ସୂତା ପରି ସରୁ ହୋଇଯାଏ । ଶେଷରେ ବର୍ଦ୍ଧିତ ଜନନାଙ୍ଗଟି ମୂଳ ଶରୀରରୁ ବିଚ୍ଛିନ୍ନ ହୋଇ ସ୍ୱତନ୍ତ୍ର ସଂଜ୍ଞା ନେଇ ବଞ୍ଚିରୁହେ । ଏହା ମଧରେ ଅଣ୍ଡାର ବୃଦ୍ଧି ହୁଏ ଓ ପରିଶେଷରେ ଅଣ୍ଡାରୁ ଛୁଆ ବାହାରି ଇଲକୃମି ତା'ର ନୂତନ ଜୀବନ ଆରମ୍ଭ କରେ ।

ପୁରୁଷ ବୋନେଲିଆର (Bonelia) ଜୀବନ ସୁଖର ନା ପୀଡ଼ନର ତାହା ବୋନେଲିଆ ମୁହଁରୁ ନ ଶୁଣିବା ଯାଏ କହିବା କଷ୍ଟ । ଭୂମଧ୍ୟସାଗର ଓ ଉତ୍ତର ଆଟଲାଣ୍ଟିକ୍ ମହାସାଗରରେ ରହୁଥିବା ଏହି କୃମିଟିର ଜୀବନ ବଡ଼ ବିଚିତ୍ର । ସ୍ତ୍ରୀ ବୋନେଲିଆ ତୁଳନାରେ ପୁରୁଷ ବୋନେଲିଆର ଆକାର ଯଥେଷ୍ଟ ଛୋଟ । ସ୍ତ୍ରୀ ବୋନେଲିଆ ଦେଖିବାକୁ ଗୋଟିଏ ଲମ୍ୱ ବେକଯୁକ୍ତ ସୁରାଇ ପରି । ଅପର ପକ୍ଷରେ ପୁରୁଷକୁ ଦେଖିବାକୁ ଛୋଟ କଅଁଳିଆ ଆମ୍ବ ପତ୍ର ପରି । ଜନ୍ମବେଳେ ବୋନେଲିଆ ଲାର୍ଭାର କୌଣସି ଲିଙ୍ଗ ନଥାଏ । ସମୁଦ୍ର ପାଣିରେ ଲାର୍ଭାଗୁଡ଼ିକ ପହଁରି ବୁଲନ୍ତି । ପରେ ପରେ ସେଠାକୁ ଏକ ସ୍ତ୍ରୀ ବୋନେଲିଆ ଆସି ପହଞ୍ଚେ । ସେତେବେଳେ କିଛି ଲାର୍ଭା ସ୍ତ୍ରୀର ପାଟି ଓ ଲମ୍ୱ ବେକ ମଧ ଦେଇ ଶରୀର ଅଭ୍ୟନ୍ତରରେ ପହଞ୍ଚନ୍ତି । ଶରୀର ଭିତରେ ନିସୃତ ବିଭିନ୍ନ ହରମୋନ ଆଦି ପ୍ରଭାବରେ ଲାର୍ଭାଗୁଡ଼ିକ ପୁରୁଷ ବୋନେଲିଆରେ ପରିଣତ ହୁଅନ୍ତି । କେତେକ ଲାର୍ଭା (ଯେଉଁମାନେ ସ୍ୱାଧୀନ ଚେତା) ସ୍ତ୍ରୀ ଶରୀର ଭିତରେ ପ୍ରବେଶ ନ କରି ସ୍ୱାବଲମ୍ବୀ ଜୀବନଯାପନ କରନ୍ତି । ସେମାନେ ପରେ ସ୍ତ୍ରୀ ବୋନେଲିଆରେ ପରିଣତ ହୁଅନ୍ତି, ଆଉ କେତେକ ଲାର୍ଭା ସ୍ତ୍ରୀ ଶରୀରରେ ପ୍ରବେଶ କରି ମଧ ପରଜୀବି ଭାବରେ ସେଠାକାର ପରିବେଶ ସହ ଖାପ ଖୁଆଇ ପାରନ୍ତି ନାହିଁ ଓ ପୁନଶ୍ଚ ସ୍ୱାଧୀନ ଜୀବନକୁ ଫେରି ଆସନ୍ତି, ସେମାନେ ନା ସ୍ତ୍ରୀ କୃଳର ଅଥବା ପୁରୁଷ କୂଳର ହୋଇ ପାରନ୍ତି । ଶେଷରେ ଉଭୟ ଲିଙ୍ଗୀ ରୂପରେ ଜୀବନ ବିତାଇ ଦିଅନ୍ତି ।

ମଣିଷର ସାମାଜିକ ଦୃଷ୍ଟିରେ ପୁରୁଷ ବୋନେଲିଆର ଜୀବନକୁ କି ରୂପରେ ଆଖ୍ୟାୟିତ କରିହେବ ? ତେବେ ପ୍ରକୃତିର ଅନେକ ଅଦ୍ଭୁତ ଖିଆଲ ମଧରୁ ପୁରୁଷ ବୋନେଲିଆର ଜୀବନ ନିଶ୍ଚିତ ଭାବରେ ଏକ ଖାମ୍‌ଖିଆଲ !

ଉପଯୁକ୍ତ ସଙ୍ଗିନୀଟିଏ ଥରେ ପାଇଗଲେ ସିନ୍‌ଗେମସ୍ ଟ୍ରାକିଆଲିସ (Syngamus Trachealis) ନାମକ ରକ୍ତ ଶୋଷକ ପୁରୁଷ କୃମିଟି ସ୍ତ୍ରୀ ସହ ଆଜୀବନ ମିଳିତ ହୋଇ ରହିବାକୁ ପସନ୍ଦ କରିଥାଏ । କୁକୁଡ଼ା, ବତକ ଆଦି ପକ୍ଷୀମାନଙ୍କ ଶ୍ୱାସନଳୀରେ ରହୁଥିବା ଏହି ରକ୍ତଶୋଷକ କୃମିଟି ଖାଦ୍ୟ ସହିତ ଶରୀର ମଧକୁ ପ୍ରବେଶ କରିଥାଏ । ସ୍ତ୍ରୀ କୃମିଟି ଦେଖିବାକୁ ଗୋଟିଏ ବରବଟି

ମଞ୍ଜି ପରି ଓ ପୁରୁଷ ତା'ଠୁ ସାନ ଢୋକ ପରି । ଅଣ୍ଡା ଫୁଟି ଛୁଆ ବାହାରିବାର କିଛି ଦିନ ପରେ ପୁରୁଷ କାଳ ବିଳମ୍ବ ନ କରି ସ୍ତ୍ରୀର ଜନନାଙ୍ଗ ପାଖରେ ଲାଗି ରହିଯାଏ ।

ରୋହି, ଭାକୁଡ଼ ଆଦି ମାଛର ଗାଲିସିରେ ଲାଗି ରହିଥିବା ଡ଼ିପ୍ଲୋଜୁନ ପାରାଡ଼ିକ୍ସମ (Diplozoon paradixum) ଯଦିଓ ଉଭୟ ଲିଙ୍ଗୀ ମାତ୍ର ମିଳନ ପାଇଁ ଏମାନେ ଏକ ଅନ୍ୟର ସାହାଯ୍ୟ ନିଅନ୍ତି । ସଙ୍ଗିନୀ ପାଇଲା ପରେ ଶରୀରର ମଧ୍ୟଭାଗରେ ଥିବା ଜନନାଙ୍ଗ ଦ୍ୱାରା ଏମାନେ ଏକ ଅନ୍ୟ ସହ ମିଳିତ ହୁଅନ୍ତି । ଏହି ମିଳିତ ହୋଇଥିବା ଅବସ୍ଥାରେ ଏମାନେ ବାକି ଜୀବନ ବିତାଇ ଦିଅନ୍ତି । ଡ଼ିପ୍ଲୋଜୁନର ଏତାଦୃଶ ମିଳନକୁ ବର୍ଣ୍ଣନା କରି ବ୍ଲସ ଲେଖିଛନ୍ତି, "An erotic act with four sexual organs mating crosswise in a double marriage."

ମଣିଷ ଓ ଅନ୍ୟାନ୍ୟ ମେରୁଦଣ୍ଡୀ ପ୍ରାଣୀଙ୍କର ଖାଦ୍ୟ ନଳୀରେ ରହୁଥିବା ଫିତାକୃମି (Tape Worm) ଶରୀରର ମୁଣ୍ଡ ଓ ବେକ ଅଂଶଟିକୁ ବାଦ ଦେଲେ ଶରୀରର ବାକି ସମସ୍ତ ଖଣ୍ଡ କେବଳ ଜନନାଙ୍ଗରେ ଭରପୁର । ଜନନାଙ୍ଗ ପୁଣି ଗୋଟେ ଅଧେ ନୁହେଁ ଶହ ଶହ ଖଣ୍ଡ ଗୋଟାଏ ଶିକୁଳି ପରି ଲମ୍ବିଛି ୨୦ ଫୁଟରୁ ୪୦ ଫୁଟ ପର୍ଯ୍ୟନ୍ତ ।

ଫିତାକୃମିର ବୈଶିଷ୍ଟ୍ୟ ତା'ର ବେକ ତଳକୁ ଥିବା ଛୋଟ ଖଣ୍ଡଗୁଡ଼ିକ । ବେକ ତଳକୁ ଥିବା ଖଣ୍ଡଗୁଡ଼ିକରେ ରହୁଛି ପୁରୁଷ ଜନନାଙ୍ଗ । ମଝିରେ ଥିବା ଖଣ୍ଡଗୁଡ଼ିକରେ ଉଭୟ ପୁରୁଷ ଓ ସ୍ତ୍ରୀ ଜନନାଙ୍ଗ ଏବଂ ଶେଷ ଖଣ୍ଡଗୁଡ଼ିକ କେବଳ ସ୍ତ୍ରୀ ଜନନାଙ୍ଗ, ଯାହା ଅଣ୍ଡାରେ ଭରପୁର । ମିଳନ ହୋଇଗଲେ ପୁରୁଷ ଜନନାଙ୍ଗ ଶରୀରରେ ମିଳେଇ ଯାଏ । ଏହା ଦ୍ୱାରା ସ୍ତ୍ରୀ ଜନନାଙ୍ଗର ବୃଦ୍ଧି ପାଇଁ ସୁବିଧା ହୁଏ । ସ୍ତ୍ରୀ ଜନନାଙ୍ଗଗୁଡ଼ିକର ସମ୍ପୂର୍ଣ୍ଣ ବିକାଶ ହୋଇଗଲେ ତାହା ମୂଳ ଶରୀରରୁ ଛିଣ୍ଡିଯାଇ ଭୋଜଦାତା ଶରୀର ଭିତରୁ ବାହାରକୁ ଚାଲିଆସେ । ବାହାରକୁ ଆସି ସ୍ତ୍ରୀ ଜନନାଙ୍ଗରୁ ଅଣ୍ଡା ଫୁଟି ଲାର୍ଭା ବାହାରେ । ଲାର୍ଭା ଏକ ନୂତନ ଭୋଜଦାତା ପାଇଁ ଅପେକ୍ଷା କରେ । ପ୍ରାୟ ପ୍ରତ୍ୟେକ ପ୍ରଜାତିର ଫିତା କୃମି ନିଜର ଜୀବନଚକ୍ର ପୂର୍ଣ୍ଣ କରିବା ଲାଗି ଥରେ ଦି'ଥର ଭୋଜଦାତା ବଦଳେଇ ଥାଆନ୍ତି । କେତେବେଳେ ଉକୁଣି, କେତେବେଳେ ଘୁସୁରି କେତେବେଳେ ମାଛ ବା କଙ୍କଡ଼ା ଏମାନଙ୍କ ସାମୟିକ ଆବାସ ରୂପରେ କାର୍ଯ୍ୟ କରିଥାଏ । ସାମୟିକ ଆବାସଗୁଡ଼ିକରେ ଲାର୍ଭା ଆହୁରି ପରିଣତ ହୁଏ ଏବଂ ନୂତନ ଭୋଜଦାତାର ସନ୍ଧାନ ପାଇଲେ କାଳବିଳମ୍ବ ନକରି ସାମୟିକ ଆବାସକୁ ତ୍ୟାଗ କରେ ।

ସବୁ ପରଜୀବି ଫିତାକୃମି ଯେ କେବଳ ମଣିଷର ଅନିଷ୍ଟ କରନ୍ତି ତାହା ନୁହେଁ । ଜଳଚର ପକ୍ଷୀଙ୍କ ଖାଦ୍ୟନାଳୀରେ ରହୁଥିବା କେତେକ ଫିତାକୃମିର ଲାର୍ଭାକୁ ମଣିଷ ଖାଦ୍ୟ ରୂପରେ ମଧ୍ୟ ବ୍ୟବହାର କରିଥାଏ । ଜିଆନାଡ଼ ପରି ଦେଖିବାକୁ ଏହି ଫିତା କୃମିର ଲାର୍ଭା ପ୍ରାୟ ଏକ ଫୁଟ ପର୍ଯ୍ୟନ୍ତ ଲମ୍ବ ହୋଇଥାଏ । ସାମୟିକ ଭାବରେ ଏମାନେ ମାଛର ଗାଲିସିରେ ଲାଗି ରୁହନ୍ତି । ଇଟାଲିର କେତେକ ଅଞ୍ଚଳର ଲୋକେ ମାଛ ସହ ଏହି ଲାର୍ଭାଗୁଡ଼ିକୁ ମଧ୍ୟ ଖାଦ୍ୟ ରୂପରେ ବ୍ୟବହାର କରିଥାନ୍ତି ।

# ସମକାମୀ ଜିଆର ଅପତ୍ୟ ସ୍ନେହ

ଉଚ୍ଚବର୍ଗ ପ୍ରାଣୀମାନଙ୍କ ମଧ୍ୟରେ ଅପତ୍ୟ ସ୍ନେହ (Parental Care) ଏକ ସାଧାରଣ ଘଟଣା । ଛୁଆ ନିଜ ଗୋଡ଼ରେ ଠିଆ ନ ହେବାଯାଏଁ ପିଲାର ଖାଦ୍ୟ ତା' ପାଇଁ ଉପଯୁକ୍ତ ବାସସ୍ଥାନ, ଶତ୍ରୁ କବଳରୁ ରକ୍ଷା ପ୍ରଭୃତି କାର୍ଯ୍ୟର ବ୍ୟବସ୍ଥା ପିତାମାତା କରିଥାନ୍ତି । ଏଥିପାଇଁ ପ୍ରାଣୀକୁଳରେ କିଏ ବସା ବାନ୍ଧେ, କିଏ ଅଣ୍ଡାକୁ ପିଠିରେ ପକାଏ କିଏ ପେଟ ତଳ ମୁଣାରେ ଅଣ୍ଡାକୁ ସାଇତି ରଖେ । ଅପତ୍ୟ ସ୍ନେହର ଚରମ ପ୍ରକାଶ ହୋଇଛି ସ୍ତନ୍ୟପାୟୀ ପ୍ରାଣୀଙ୍କଠି । ଅନେକେ ମଣନ୍ତି ଏହି ପ୍ରଥାର ପଥପ୍ରଦର୍ଶକ ଆମର ଅତି ପରିଚିତ କୃଷକ ବନ୍ଧୁ ଜିଆ ।

ଜିଆ ସହ ଆମ ସଭିଙ୍କ ଜଣା ଅଧିକେ ପରିଚୟ ରହିଛି । ଅଙ୍ଗୁରୀମାଳା (Annelida) ବର୍ଗର ଏହି ପ୍ରାଣୀଟି ପ୍ରକୃତିର ନିଜସ୍ୱ ହଳୁଆ । ମଣିଷ ଚାଷ ନିମନ୍ତେ ଭୂମି କର୍ଷଣ କଲା ଏହାଦ୍ୱାରା ଜମିର ଉର୍ବରତା ରକ୍ଷା ପାଇଲା । ହେଲେ ମଣିଷ ହଳ କାମ ଶିଖିବା ଅନେକ ପୂର୍ବରୁ ଏହି ପ୍ରାଣିଟି ତା'ର ନିଜସ୍ୱ ଉପାୟରେ ମାଟି ହଳ କରି ଆସୁଛି । ଜିଆର ଏହି ହଳ ଯୋଗୁଁ ଅମ୍ଳଜାନ, ଯବକ୍ଷାରଜାନ ଆଦି ଗ୍ୟାସ ସହଜରେ ମାଟି ଭିତରକୁ ଯାଇ ପାରୁଛି ଓ ବୃକ୍ଷମୂଳରେ ଯବକ୍ଷାରଜାନ ସଂଯୋଜନ କ୍ରିଆଟି ସୁରୁଖୁରୁରେ ହୋଇ ପାରୁଛି ।

ଜିଆ ଶରୀରର ମଧ୍ୟଭାଗର କିଛିଟା ଉପରକୁ ରହିଛି ସାମାନ୍ୟ ଧଳା ବା ହଳଦିଆ ବଳା ପରି ଅଂଶଟିଏ । ଏହି ଅଂଶଟିର ନାମ ପ୍ରମେଖଳା ଯାହାର ଇଂରାଜୀ ନାମ କ୍ଲାଇଟେଲମ୍ (Clitellum) । ଶରୀରର ଏହି ଅଂଶଟି ଜନନକ୍ରିୟାର ଏକ ବିଶେଷ ଅଙ୍ଗ । ଜିଆ ଉଭୟଲିଙ୍ଗୀ ହେଲେ ଜିଆ ଡିମ୍ବାଣୁ ତା ନିଜ ଶରୀରର ଶୁକ୍ରାଶୟରୁ ଉଦ୍‌ଭବ ଶୁକ୍ରାଣୁ ଦ୍ୱାରା ସଂଯୋଜିତ ହୋଇ ଉର୍ବରା(Fertilize) ହୁଏ ନାହିଁ । ଏହାର ଅନ୍ୟତମ କାରଣ ଏକା ଶରୀରର ଶୁକ୍ରାଣୁ ଓ ଡ଼ିମ୍ବାଣୁ



ସମକାମୀ ଜିଆର ମିଳନ

ଏକ ସମୟରେ ପରିପକ୍ୱ ହୁଏ ନାହିଁ । ଏଣୁ ଦୁଇଟି ଜିଆ ମିଳିତ ହୋଇ ଏକର ଶୁକ୍ରାଣୁ ଦ୍ୱାରା ଅନ୍ୟର ଡିମ୍ବାଣୁକୁ ଉର୍ବରା କରାନ୍ତି ।

ସାଧାରଣତଃ ବର୍ଷାଋତୁ ପରେ ପରେ ମାଟି ଯେବେ ଓଦାଥାଏ ପାହାନ୍ତିଆରୁ ଦୁଇଟି ପରିଣତ ଜିଆ ଗାତରୁ ବାହାରି ମିଳିତ ହୁଅନ୍ତି । ମିଳନ ସମୟରେ ଏକର ଅଗ୍ରଭାଗ ଅନ୍ୟର ପଶ୍ଚାତ ଆଡ଼କୁ ଥାଏ । ଏହି ସମୟରେ ପ୍ରମେଖଳାଟିରୁ ଗୋଟିଏ ପ୍ରକାରର ଅଠାଳିଆ ପଦାର୍ଥ ନିଃସୃତ ହୁଏ ଏବଂ ଜିଆ ଦୁଇଟିର ସାମୟିକ ଆଲିଙ୍ଗନ ଆହୁରି ନିବିଡ଼ ହୁଏ । ଏହି ଆଲିଙ୍ଗନ ସମୟରେ ଗୋଟିଏ ଜିଆର ଶୁକ୍ରାଣୁ ଅନ୍ୟ ଜିଆର ଶୁକ୍ରାଣୁ ଥଳିରେ ସଞ୍ଚିତ ହୁଏ । ଅର୍ଥାତ୍ ଜିଆର ପୁରୁଷ ଭାଗଟି କେବଳ ମିଳିତ ହୋଇ ଶୁକ୍ରାଣୁ ଆଦାନପ୍ରଦାନ କରିଥାନ୍ତି । ତେବେ ପ୍ରାଣୀକୁ ସମକାମୀତାର ବାଟ କ'ଣ ଜିଆ ଦେଖେଇଛି ?

ମିଳନର କିଛି ଦିନ ପରେ ଡିମ୍ବାଣୁ ପରିପକ୍ୱ ହୁଏ । ପରେ ପରେ ପ୍ରମେଖଳାଟି ଫୁଲି ଉଠେ । ପ୍ରମେଖଳାଟି ଫୁଲି ଯିବାର ଅର୍ଥ ଏଥିରେ ଥିବା ବିଭିନ୍ନ ଗ୍ରନ୍ଥିରୁ ଏକ ଧରଣର କ୍ଷରଣ ହୁଏ ଏବଂ ତାହା ପ୍ରମେଖଳା ଚାରିପଟେ ଗୋଟିଏ ଆବରଣ ସୃଷ୍ଟି କରେ । ଖୋଳ ସଦୃଶ ଆବରଣଟି ତିଆରି ହୋଇଗଲେ, ଜିଆ ତା'ର ମାଂସପେଶୀର ସଙ୍କୋଚନ ଓ ପ୍ରସାରଣ ଦ୍ୱାରା ପ୍ରମେଖଳାର ଉପର ଦସ୍ତାନା ସଦୃଶ ଆବରଣଟିକୁ ଆଗକୁ ଠେଲି ନିଏ । ଖୋଳଟି ଆଗକୁ ଅଗ୍ରସର ହେବା ସମୟରେ ଜିଆ ତାହା ମଧ୍ୟରେ ନିଜ ଡିମ୍ବାଣୁ ଓ ଅନ୍ୟ ଜିଆରୁ ସଞ୍ଚିତ ଶୁକ୍ରାଣୁକୁ ଖୋଳ ଭିତରେ ଛାଡ଼ି ଦିଏ । ଖୋଳଟି ଶରୀର ବାହାରକୁ ଆସିଲା ମାତ୍ରକେ ତା'ର ଦୁଇଟି ମୁହଁ ଆପେ ଆପେ ବନ୍ଦ ହୋଇଯାଏ । ଇଂରାଜୀରେ କ୍ୟାପସ୍ୟୁଲ ସଦୃଶ ଖୋଳଟିର ନାମ କୋକୁନ (Cocoon) । କୋକୁନ ଭିତରେ ଡିମ୍ବାଣୁ ସହ ଶୁକ୍ରାଣୁର ମିଳନ ହୁଏ ତା' ପରେ କୋକୁନ ମଧ୍ୟରେ ଡିମ୍ବାଣୁର ବୃଦ୍ଧି ହୁଏ ଓ ଅଣ୍ଡା ଫୁଟି ଛୁଆ ବାହାରେ । ଅଣ୍ଡାକୁ ପ୍ରକୃତିର ଆଶ୍ରୟରେ ଛାଡ଼ି ନ ଦେଇ, ଗୋଟିଏ କ୍ୟାପସ୍ୟୁଲ ମଧ୍ୟରେ ସୁରକ୍ଷିତ ରଖି ତା'ର ବୃଦ୍ଧି କରେଇବାର ନୂତନ ଚିନ୍ତାରେ, ଜିଆ ନିଶ୍ଚିତ ରୂପରେ ପ୍ରଥମ । ତେଣୁ ସନ୍ତାନ ଲାଳନର ବାଟ ଯଦି ପ୍ରାଣୀକୁ କେହି ଦେଖେଇଛି ସେ ଆମର ଅତି ପରିଚିତ ଜିଆ । ସନ୍ତାନ ଲାଳନ କ୍ରିଆରେ ଆଉ ଗୋଟିଏ ପାହୁଣ୍ଡ ଆଗେଇ ଯାଇଛି ଜିଆ ଗୋଷ୍ଠିର ଜୋକ (Leech) । ଜିଆ ପରି ଜୋକ ମଧ୍ୟ କୋକୁନର ଆବରଣ ଭିତରେ ଅଣ୍ଡାର ବିକାଶ କରାଇଥାଏ । ତେବେ ଜୋକର କୋକୁନ, ଜିଆ କୋକୁନ ଅପେକ୍ଷା ଯଥେଷ୍ଟ ବଡ଼ । ଏଗୁଡ଼ିକ ଦେଖିବାକୁ ପାରା ଅଣ୍ଡାଠାରୁ କିଛି ସାନ । କୋକୁନ ମଧ୍ୟରେ ଯେବେ ଅଣ୍ଡାର ବୃଦ୍ଧି ହୁଏ ଜୋକ ସେତେବେଳେ କୋକୁନ ଚାରିପଟେ ଗୁଡ଼େଇ ରହିଥାଏ । ଆବଶ୍ୟକ ହେଲେ କୋକୁନକୁ ନିରାପଦ ସ୍ଥାନକୁ ସ୍ଥାନାନ୍ତରିତ ମଧ୍ୟ କରାଇଥାଏ ।

ଆନିଲିଡ଼ା ବା ଅଙ୍ଗୁରୀମାଳ କୁଳର ଅନ୍ୟ ଏକ ସଦସ୍ୟ ମାରସୁପିଓଡ଼େଲା (Marsupiodella) । ମାରସୁପିଓଡ଼େଲାର ଏଭଳି ନାମକରଣ ହେବାର କାରଣ ଏହି ଆନିଲିଡ଼ାଟିର ସନ୍ତାନ ଲାଳନ ପ୍ରକ୍ରିୟା ସହ କଙ୍ଗାରୁର ସନ୍ତାନ ଲାଳନର ଅନେକ ସାଦୃଶ୍ୟ ରହିଛି । ଅନ୍ୟ ଜୋକମାନଙ୍କ ପରି ମାରସୁପିଓଡ଼େଲା କୌଣସି କୋକୁନ ତିଆରି କରେ ନାହିଁ, ମାତ୍ର ଅଣ୍ଡାକୁ

ପେଟ ତଳକୁ ଥିବା ଏକ ମୁଣାରେ ସାଇତି ରଖେ । ମୁଣା ଭିତରେ ଅଣ୍ଡାର ବୃଦ୍ଧି ହୁଏ । ମାରସୁପିଓଡ୍ରେଲା ଯଦିଓ ଉଭୟଲିଙ୍ଗୀ, ତେବେ ମାତା ରୂପରେ ସନ୍ତାନର ଯତ୍ନ ସେ ଅଧିକ ନିଏ ପିତା ରୂପରେ ତା'ର କାମ କେବଳ ଶୁକ୍ରାଣୁ ଯୋଗାଣ ।

ସମୁଦ୍ରରେ ଏହିପରି ଅନେକ ଆନିଲିଡ଼ା ଅଛନ୍ତି, ଯେଉଁମାନେ ଚାଲବୁଲ ନ କରି ପାଦପ ପରି ଗୋଟିଏ ଜାଗାରେ ରହି ଜୀବନ ବିତାନ୍ତି । ସାଧାରଣତଃ ଅଗଭୀର ସମୁଦ୍ରରେ ଥିବା ପଥର ଉପରେ ଏଗୁଡ଼ିକ ଲାଗି ରହନ୍ତି । ଗୋଟିଏ ସ୍ଥାନରେ ରହି ବଂଶବୃଦ୍ଧି କଲେ ଦିନେ ନା ଦିନେ ରହିବା ସ୍ଥାନ ଓ ଖାଦ୍ୟର ଅଭାବ ହେବ । ଏଥିପାଇଁ ଏହି ଗୋଷ୍ଠୀର ଆନିଲିଡ଼ା ବିଭିନ୍ନ ଉପାୟରେ ନିଜ ବଂଶଜମାନଙ୍କୁ ଦୂର ଦୂରାନ୍ତରକୁ ପଠେଇ ଦିଅନ୍ତି । ଏଥିପାଇଁ ସମୁଦ୍ରରେ ଆସୁଥିବା ଜୁଆର ବା ଅନ୍ୟ ପ୍ରାଣୀମାନଙ୍କ ସହାୟତା ଏମାନେ ଲୋଡ଼ନ୍ତି । ଦୂରଦୂରାନ୍ତରକୁ ଗଲେ ବାଟରେ ମରିହଜି ଯିବାର ସମ୍ଭାବନା ଅଧିକ ତେଣୁ ଏମାନେ ବହୁସଂଖ୍ୟାରେ ଉତ୍ପାଦନ କରିଥାନ୍ତି ।

ଅକ୍ଟୋବର ଏବଂ ନଭେମ୍ବର ମାସର ପୂର୍ଣ୍ଣିମା ବା ଅମାବାସ୍ୟାର ଦିନେ ଦୁଇ ଦିନ ପୂର୍ବରୁ ଫିଜି, ସାମୋଆନ ଆଦି ଦ୍ୱୀପପୁଞ୍ଜର ସମୁଦ୍ରତଟ ହଳଦିଆ ବା ଶାଗୁଆ ବର୍ଣ୍ଣର ହୋଇଯାଏ । ରଙ୍ଗ ବଦଳିବାର କାରଣ ଇଉନିସ ଭିରିଡ଼ିସ୍ (Eunice viridis) ନାମକ ସ୍ଥବିର ଆନିଲିଡ଼ାର ଖଣ୍ଡିତ ଜନନାଙ୍ଗ । ଫିତାକୃମି ପରି ଦେଖିବାକୁ ଏହି ଆନିଲିଡ଼ାର ଶରୀରର ଶେଷ ଖଣ୍ଡଗୁଡ଼ିକ ପୁରୁଷ ଓ ସ୍ତ୍ରୀ ଜନନାଙ୍ଗ ବିଶେଷ । ପୁରୁଷ ଖଣ୍ଡଗୁଡ଼ିକ ଦେଖିବାକୁ ହଳଦିଆ, ସ୍ତ୍ରୀ ଖଣ୍ଡଗୁଡ଼ିକ ଦେଖବାକୁ ଶାଗୁଆ । ଜୁଆର ଆସିବାର ପ୍ରାକ୍‌କାଳରେ ଜନନାଙ୍ଗଗୁଡ଼ିକ ଶରୀରରୁ ଛିଣ୍ଡିଯାଏ ଓ ସମୁଦ୍ରରେ ଭାସିବୁହେ । ଜନନାଙ୍ଗର ସଂଖ୍ୟା ଏତେ ଅଧିକ ଯେ ତା'ର ରଙ୍ଗରେ ସମୁଦ୍ର ପାଣିର ରଙ୍ଗ ବଦଳିଯାଏ । କିଛି ସମୟ ଭାସିଲା ପରେ ଖଣ୍ଡିତ ଜନନାଙ୍ଗରୁ ଶୁକ୍ରାଣୁ ଓ ଡିମ୍ବାଣୁ ବାହାରିଯାଏ ଓ ସମୁଦ୍ର ପାଣିରେ ସେମାନଙ୍କ ମିଳନ ହୁଏ । ଜୁଆର ଆସିଲେ ମିଳିତ ଡିମ୍ବାଣୁ ଦୂରକୁ ଚାଲିଯାଏ ଓ ନୂତନ ସ୍ଥାନ ନିର୍ବାଚନ କରି ନୂତନ ଜୀବନ ଆରମ୍ଭ କରେ । ଏଇ ସମସ୍ତ ଆନିଲିଡ଼ାମାନଙ୍କ ମିଳନକାଳୀନ ବ୍ୟବହାର ଆଦିକୁ ଲକ୍ଷ୍ୟ କଲେ ଗୋଟିଏ କଥା ମନରେ ହୁଏ କେଉଁ କ୍ୟାଲେଣ୍ଡର ବା କେଉଁ ଘଣ୍ଟାର ନିର୍ଦ୍ଦେଶରେ ସମୁଦ୍ରରେ ଆସୁଥିବା ଜୁଆର ଭଟ୍ଟାର ହିସାବ ରଖୁଛି ?

ରାଚେଲ କାରସନ ତାଙ୍କର ପ୍ରସିଦ୍ଧ ବହି "The Sea Around Us" ଲେଖିଛନ୍ତି, Concerning each of these, the question recurs but remains unanswered : is it the state of the tides that in some unknown way supplies the impulse from which springs this behaviour, or is it, even more mysteriously some other influence of the moon ? It is easier to imagine that it is the press and the rhythmic movement of the water that in some way brings about this response. But why is it only certain tides of the year... At present no one can answer."

# ପୀଡ଼ନରେ ସୁଖ

ଶମ୍ବୁକ କୁଳର(Phylum Mollusca) ଶଙ୍ଖ, ଗେଣ୍ଡା, ଶାମୁକା ଆଦି କେତୋଟି ପରିଚିତ ପ୍ରାଣୀକୁ ଛାଡ଼ି ଦେଲେ, ଏହି କୁଳର ବିରାଟ ବ୍ୟପ୍ତି ସହ ଆମେ ଅପରିଚିତ କହିଲେ ଚଳେ । ପ୍ରାୟ ୩୦,୦୦୦ ପ୍ରଜାତିକୁ ନେଇ ଶମ୍ବୁକ କୁଳ ଗଠିତ । ଏହା ଭିତରୁ ଅଧିକାଂଶ ରହନ୍ତି ସମୁଦ୍ରରେ, କିଛି ମଧୁର ପାଣି ଓ କେତେକ ସ୍ଥଳଭାଗରେ ।

କେବଳ ଦୃଷ୍ଟିନନ୍ଦନ ଖୋଳପାକୁ ଛାଡ଼ିଦେଲେ ଶାମୁକାର ମିଳନ ଉପାଚାର ଆଦୌ ଆକର୍ଷଣୀୟ ନୁହେଁ । ଆପାତ ଶାନ୍ତି ପ୍ରିୟ ଏହି ପ୍ରାଣୀଗୁଡ଼ିକ ନିଜ ଖୋଳପା ମଧ୍ୟରେ ରହିବାକୁ ଅଧିକ ଭଲ ପାଆନ୍ତି । ଖୋଳପା ବାହାରକୁ ଆସି ଦୀର୍ଘ ରତିକ୍ରିଆରେ ଲିପ୍ତ ହେବାକୁ ମଧ୍ୟ ପସନ୍ଦ କରନ୍ତି ନାହିଁ । ସମୟ ହେଲେ ଶାମୁକା ପୁରୁଷ ଓ ସ୍ତ୍ରୀ ଶୁକ୍ରାଣୁ ଓ ଡିମ୍ବାଣୁଗୁଡ଼ିକୁ ପାଣିରେ ଛାଡ଼ି



ଗେଣ୍ଡାର ରତିକ୍ରିୟା

ଦିଅନ୍ତି । ପ୍ରକୃତି କୋଳରେ ଡିମ୍ବାଣୁ ସହ ଶୁକ୍ରାଣୁର ମିଳନ ହୁଏ । ମିଳନ ଉତ୍ତାରୁ ଡିମ୍ବାଣୁର ବୃଦ୍ଧି ହୁଏ ଓ ସେଥିରୁ ଲାର୍ଭା ବାହାରେ । କେତେକ ପ୍ରଜାତିର ସ୍ତ୍ରୀ ଶାମୁକା ଡିମ୍ବାଣୁଗୁଡ଼ିକୁ ପଦାକୁ ନ ଛାଡ଼ି ନିଜ ଗାଲିସି ଲଗେଇ ରଖନ୍ତି । ପୁରୁଷ ଶାମୁକା ଯେବେ ଶୁକ୍ରାଣୁ ଛାଡ଼ି ଦିଅନ୍ତି, ସେତେବେଳେ ସ୍ତ୍ରୀ ଶୁକ୍ରାଣୁ ଥିବା ପାଣିରୁ ଶୋଷାଡ଼ି ଖୋଳପା ଭିତରକୁ ନେଇନିଏ । ଶୁକ୍ରାଣୁ ସ୍ତ୍ରୀ ଶାମୁକାର ଖୋଳପା ମଧ୍ୟରେ ଗାଲିସିରେ ଲାଗିଥିବା ଡିମ୍ବାଣୁ ସହ ମିଳିତ ହୁଏ । ମିଳନ ପରେ ଗାଲିସିରେ ଲାଗିଥିବା ଅବସ୍ଥାରେ ମିଳିତ ଡିମ୍ବାଣୁର ବୃଦ୍ଧି ହୁଏ ଶେଷରେ ସେଥିରୁ ଲାର୍ଭା ବାହାରେ । ଲାର୍ଭାଗୁଡ଼ିକ ପ୍ରଥମେ ଖୋଳପା ମଧ୍ୟରେ ସୁରକ୍ଷିତ ପରିବେଶରେ କିଛି ଦିନ ରହି ପଦାକୁ ଆସନ୍ତି ଓ ରୂପାନ୍ତରିତ ହୋଇ ନୂତନ ଜୀବନ ଆରମ୍ଭ କରନ୍ତି ।

ପ୍ରକୃତିର ସବୁ ନିୟମର କିଛି ବ୍ୟତିକ୍ରମ ରହିଛି । ଇଉରୋପରେ ମିଳୁଥିବା ଗୋଟିଏ ପ୍ରଜାତିର ଶାମୁକା(European Oyster) ଉଭୟ ଲିଙ୍ଗୀ । ଉଭୟ ଲିଙ୍ଗୀ ହେବା ସତ୍ତ୍ୱେ ଏହାର ଶୁକ୍ରାଣୁ ଓ ଡିମ୍ବାଣୁ ଏକା ସମୟରେ ପରିପକ୍ୱ ହୁଏ ନାହିଁ । ତେଣୁ ଏହି ଶାମୁକା କିଛିଦିନ ପୁରୁଷ ରୂପେ ଶୁକ୍ରାଣୁ ଯୋଗାଇ ପଡ଼ୋଶୀର ଡିମ୍ବାଣୁ ସହ ମିଳିତ ହୁଏ, ପରେ ସ୍ତ୍ରୀ ରୂପରେ ପଡ଼ୋଶୀର ଶୁକ୍ରାଣୁ ସହାୟତାରେ ନିଜ ଡିମ୍ବାଣୁକୁ ନିଷିକ୍ତ କରାଏ । ନିଷିକ୍ତ ଡିମ୍ବାଣୁ ଗୁଡ଼ିକ ଗାଲିସିରେ ଲାଗି ରୁହନ୍ତି ଏବଂ ସେଇଠାରେ ସେମାନଙ୍କ ବୃଦ୍ଧି ହୁଏ । ଗାଲିସିରେ ଲାଗି ରହିବା ଫଳରେ ଲାର୍ଭାଗୁଡ଼ିକ ପର୍ଯ୍ୟାପ୍ତ ପରିମାଣରେ ଅମ୍ଳଜାନ ପାଆନ୍ତି ଓ ସେଠାରୁ ସୁରକ୍ଷିତ ରହନ୍ତି ।

କେତେକ କୃମିକୁ ଛାଡ଼ିଦେଲେ ସନ୍ତାନ ଉତ୍ପାଦନ କ୍ଷମତାରେ ଶାମୁକାର ସମକକ୍ଷ ପ୍ରାଣୀକୁଳରେ ଆଉ କେହି ନାହାନ୍ତି କହିଲେ ଚଳେ । ଏକ ହିସାବରୁ ଜଣାପଡ଼ିଛି, ଗୋଟିଏ ଶାମୁକା ବର୍ଷକୁ ପ୍ରାୟ ୧୦ ଲକ୍ଷ ବା ତା'ଠୁ ଅଧିକ ଅଣ୍ଡା ଦେଇପାରେ । ଗୋଟିଏ ସ୍ଥାନରେ ସମସ୍ତ ଅଣ୍ଡାର ବୃଦ୍ଧିହେଲେ ସେଠାରେ ଖାଦ୍ୟ, ରହିବା ସ୍ଥାନର ଅଭାବ ହେବା ସ୍ୱାଭାବିକ । ଏଣୁ ଅଣ୍ଡାରୁ ଲାର୍ଭା ବାହାରିଲେ ତାହା ସେହି ସ୍ଥାନରେ ନ ରହି ଅନ୍ୟ ସ୍ଥାନକୁ ଚାଲିଯାଏ । ସ୍ଥାନ ପରିବର୍ତ୍ତନ ତଥା ଦେଶାନ୍ତର ଯାତ୍ରାପାଇଁ ଲାର୍ଭା ଗୁଡ଼ିକ କିଛି ଦିନ ପରଜୀବି ଭାବରେ ମାଛ ଶରୀରରେ ଲାଗି ରୁହେ ଓ ମାଛ ସାହାଯ୍ୟରେ ସେ ସ୍ଥାନ ତ୍ୟାଗ କରି ନୂତନ ପରିବେଶରେ ଜୀବନ ଆରମ୍ଭ କରେ । କେତେକ ଲାର୍ଭା ଦଳବଦ୍ଧ ଭାବରେ ମାଛ ଖାଦ୍ୟନଳୀରେ ପ୍ରବେଶ କରନ୍ତି ପରେ ଖାଦ୍ୟ ନଳୀରୁ ପଦାକୁ ବାହାରି ନୂତନ ଜୀବନ ଆରମ୍ଭ କରନ୍ତି । କେତେକ ଅତି ଚାଲାକ ମାଛ ଶାମୁକାକୁ ଏ ସୁଯୋଗ ନ ଦେଇ ନିଜେ ଶାମୁକାର ଗାଲିସୀକୁ ମିଳନ କ୍ଷେତ୍ର ଭାବରେ ବ୍ୟବହାର କରନ୍ତି । ରୋଡ଼ିଅସ ଆମାରସ (Rhodeus amarus) ନାମକ ରୋହି ଭାକୁଡ ଜାତୀୟ ମାଛର ଅଣ୍ଡା ଦେବା ସମୟ ହେଲେ, ସ୍ତ୍ରୀ ମାଛ ଇଞ୍ଜେକ୍ସନ୍ ସିରିଞ୍ଜ ପରି ଏକ ଓଭିପୋଜିଟର ସାହାଯ୍ୟର ଶାମୁକାର ଗାଲିସି ଉପରେ ଅଣ୍ଡାଗୁଡ଼ିକୁ ଛାଡ଼ିଦିଏ ପରେ ପରେ ସେଇ ପାଣିରେ ପୁରୁଷ ତା'ର ଶୁକ୍ରାଣୁ ଛାଡ଼ିଦିଏ । ଶୁକ୍ରାଣୁ ଶାମୁକାର ଖୋଳପା ଭିତରକୁ ପଶି ଗାଲିସିରେ ଲାଗିଥିବା ଡିମ୍ବାଣୁକୁ ନିଷିକ୍ତ କରାଏ । ଡିମ୍ବାଣୁର ବୃଦ୍ଧି ପରେ ଛୋଟ ମାଛ ବାହାର ପରିବେଶରେ ରହିବାକୁ ସମ୍ପୂର୍ଣ୍ଣ ସକ୍ଷମ ନ ହେଲାଯାଏ ଶାମୁକାର ଖୋଳପା ଭିତରେ ରହିଥାଏ । ଠିକ ଯେଉଁ ପରିସ୍ଥିତିରେ ଶାମୁକା ଲାର୍ଭା ମାଛ ଗାଲିସିରେ ଲାଗିରୁହେ

ଏବଂ ମାଛ ତାହାକୁ ସହ୍ୟ କରେ । ଶାମୁକା ମଧ୍ୟ ତା ଗାଲିସିରେ ଲାଗିଥିବା ମାଛ ଛୁଆକୁ ସହ୍ୟକରେ ତେବେ ଏଥି ନିମନ୍ତେ ଶାମୁକାର ଗାଲିସି ସାମାନ୍ୟ ଚଉଡ଼ା ଓ ମୋଟା ହୋଇଯାଏ ।

ଆତ୍ମ ସମ୍ମୋହିତ ଶାମୁକାର ମିଳନ କ୍ରିୟା ଆପାତ ଶାନ୍ତ ଓ ରସହୀନ ହେବା ସ୍ଥଳେ ତା'ରି ଜାତି ଭାଇ ଗେଣ୍ଡାର ମିଳନ କ୍ରିୟା ମଣିଷ ଦୃଷ୍ଟିରେ ଆସୁରିକ କୁହାଯାଇପାରେ । ଗେଣ୍ଡାଙ୍କ ମଧ୍ୟରେ କେତେକ ଏକ ଲିଙ୍ଗୀ ପୁଣି କେତେକ ଉଭୟ ଲିଙ୍ଗୀ । ଆମ ଦେଶର ଗଡ଼ିଆ ପୋଖରୀରେ ମିଳୁଥିବା ଗେଣ୍ଡାଗୁଡ଼ିକ ଏକ ଲିଙ୍ଗୀ ପୁରୁଷ ଗେଣ୍ଡାର ଖୋଳପା ସ୍ତ୍ରୀ ଗେଣ୍ଡା ଅପେକ୍ଷା ଆକାରରେ ଛୋଟ । ଇଉରୋପରେ ମିଳୁଥିବା ରୋମାନ ଗେଣ୍ଡା ଉଭୟଲିଙ୍ଗୀ । ଏହାର ଶୁକ୍ରାଶୟ ଓ ଡିମ୍ବାଶୟ ଥାଇ ମଧ୍ୟ ଏକ ଶରୀରରୁ ଜାତ ଶୁକ୍ରାଣୁ ଓ ଡିମ୍ବାଣୁ କେବେହେଲେ ମିଳିତ ହୁଅନ୍ତି ନାହିଁ । ଏଣୁ ଦୁଇଟି ଗେଣ୍ଡା ମିଳନ ମାଧ୍ୟମରେ ଶୁକ୍ରାଣୁ ଅଦଳବଦଳ କରନ୍ତି । ଗେଣ୍ଡାର ଖୋଳପା ଭିତରେ ରହିଛି ଅନେକଗୁଡ଼ିଏ ବଖରା । ଏହି ବଖରାଗୁଡ଼ିକ ଏକ ଅନ୍ୟ ଉପରେ ମୋଡ଼ି ହୋଇ ରହିଛି । ସବୁଠାରୁ ଉପର ବଖରାରେ ରହିଥାଏ ଶୁକ୍ରାଶୟ ଓ ଡିମ୍ବାଶୟ । ଖୋଳପାର ସବୁଠାରୁ ଉପର ବଖରାରେ ଶୁକ୍ରାଶୟ ଥିବାରୁ ଶୁକ୍ରାଣୁ ଅନେକଗୁଡ଼ିଏ କୋଠରୀ ଅତିକ୍ରମ କରି ଏକ ନିର୍ଦ୍ଦିଷ୍ଟ ପଥରେ ଆସି ପୁରୁଷଙ୍କ ନିକଟରେ ପହଞ୍ଚେ । ଡିମ୍ବାଣୁ ନିଷିକ୍ତ ହୋଇଗଲେ ପୁଣି ସେଇ ପଥ ଦେଇ ପଦାକୁ ବାହାରି ଆସେ । ନିଷିକ୍ତ ହୋଇଥିବା ଡିମ୍ବାଣୁ ଯେବେ ବିଭିନ୍ନ କୋଠରୀ ଅତିକ୍ରମ କରେ ସେତେବେଳେ ବିଭିନ୍ନ ବଖରାରେ ଥିବା ଗ୍ରନ୍ଥିମାନଙ୍କ କ୍ଷରଣ ଡିମ୍ବାଣୁର ବୃଦ୍ଧି ପାଇଁ ପୁଷ୍ଟି ଯୋଗାଏ ।

ମିଳନ ସମୟରେ ରୋମାନ ଗେଣ୍ଡା (Roman snail) ଉଭୟ ପୁରୁଷ ଓ ସ୍ତ୍ରୀ ଭୂମିକା



ରୋମାନ ଗେଣ୍ଡାର ରତିକ୍ରିୟା

ପାଳନ କରିଥାଏ । ଏହି ସମୟରେ ଦୁଇଟି ଗେଣ୍ଡା ପରସ୍ପର ନିକଟକୁ ଆସି ଚୁମ୍ବନ କଲା ଢ଼ଙ୍ଗରେ ଏକ ଅନ୍ୟକୁ ସ୍ପର୍ଶ କରନ୍ତି । ସ୍ପର୍ଶ କ୍ରମେ ନିବିଡ଼ ହୁଏ ଓ ଗେଣ୍ଡା ଦୁଇଟି ଖୋଳପାକୁ ପଛରେ ପକେଇ ଏକ ଅନ୍ୟକୁ ଆଲିଙ୍ଗନ କଲା ପରି ପରସ୍ପର ଘନିଷ୍ଠ ହୋଇ ରହନ୍ତି । କିଛି ସମୟ ଆଲିଙ୍ଗନବଦ୍ଧ ଅବସ୍ଥାରେ ରହିଲା ପରେ ହଠାତ୍ ଗୋଟିଏ ଗେଣ୍ଡା ଛୁରା ଭୁଷିଲା ପରି ମାଂସଳ ପୁରୁଷାଙ୍ଗଟିକୁ ସଙ୍ଗୀନିର ଶରୀର ମଧ୍ୟକୁ ପୁରେଇ ଦିଏ । ଏହି ସମୟରେ ସଙ୍ଗୀନି ଯନ୍ତ୍ରଣାରେ କୁଙ୍କଡ଼େଇ ଯାଏ ମାତ୍ର ଘନିଷ୍ଠ ଆଲିଙ୍ଗନରୁ ଓହରେ ନାହିଁ । ଏହାପରେ ସ୍ତ୍ରୀ ଭୂମିକା ପାଳନ କରୁଥିବା ଗେଣ୍ଡାଟି ପୁରୁଷ ରୂପରେ  ଠିକ୍ ପୂର୍ବପରି ଅପର ଗେଣ୍ଡାର ଶରୀର ମଧ୍ୟକୁ ପୁରେଇ ଦିଏ । ଏହି ସମୟରେ ଗେଣ୍ଡା ଦୁଇଟିର ଉତ୍ତେଜନା ଉତ୍ତୋରତର ବୃଦ୍ଧିପାଏ ଓ ଗେଣ୍ଡା ଦୁଇଟି ସମସ୍ତ ଶକ୍ତି ନେଇ ପୁରୁଷାଙ୍ଗଟିକୁ ସବା ଉପର ବଖରାରେ ଥିବା ସ୍ତ୍ରୀ ଜନନାଙ୍ଗ ନିକଟରେ ପହଞ୍ଚେଇବାକୁ ଚେଷ୍ଟା କରେ । ପ୍ରାୟ ଅଧଘଣ୍ଟା ଆଲିଙ୍ଗନବଦ୍ଧ ରହିବା ପରେ ପୁରୁଷାଙ୍ଗଟି ଡିମ୍ବାଶୟ ନିକଟରେ ଥିବା ଗୋଟିଏ ମୂଣା ଭିତରେ ଶୁକ୍ରାଣୁ ଥୋଇବାରେ ସକ୍ଷମ ହୋଇଥାଏ । ଏହି କାର୍ଯ୍ୟଟି ଦୁଇଟି ଗେଣ୍ଡା ପ୍ରାୟ ଏକା ସମୟରେ କରିଥାନ୍ତି । ମିଳନ ପରେ ଗେଣ୍ଡା ଦୁଇଟି ସେଇ ସ୍ଥାନରେ କିଛି ସମୟ ବିଶ୍ରାମ ନିଅନ୍ତି ପରେ ପରେ ଦୁଇ ଜଣ ଦୁଇ ଦିଗକୁ ଚାଲି ଯାଆନ୍ତି ।

ଗେଣ୍ଡା ମିଳନ କ୍ରିୟାର ବିଶେଷତ୍ୱ- ଏହି ମିଳନ ବେଳେ ଏକ ଅନ୍ୟକୁ ଶାରିରୀକ କଷ୍ଟ ଦେଇ ସୁଖ ପାଇଥାଏ । ଅଥବା ଶାରୀରିକ ପୀଡ଼ନରୁ ସେ ସୁଖପାଏ । ଲକ୍ଷ୍ୟ କରାଯାଇଛି ଗେଣ୍ଡା ତା'ର ପୁରୁଷାଙ୍ଗଟିକୁ ପ୍ରଥମ ଚେଷ୍ଟାରେ ସଙ୍ଗୀନିର ଶରୀରରେ ପୂରାଇ ପାରେ ନାହିଁ । ବାରମ୍ବାର ଚେଷ୍ଟା ଫଳରେ ସେ ସକ୍ଷମ ହୋଇଥାଏ । ଏହି ଚେଷ୍ଟା ବେଳେ ସବଳ ପୁରୁଷାଙ୍ଗ ଦ୍ୱାରା ଅପର ଗେଣ୍ଡା କ୍ଷତବିକ୍ଷତ ହୋଇଯାଏ ତଥାପି ଘନିଷ୍ଠ ଆଲିଙ୍ଗନରୁ ନିବୃତ୍ତ ହୁଏ ନାହିଁ । ପୀଡ଼ନରୁ ହିଁ ସେ ପାଏ ମିଳନର  ସୁଖ । ଏହା ହିଁ ଗେଣ୍ଡା ମିଳନର ବୈଚିତ୍ର୍ୟ ।

# ଅକ୍ଟୋପସ୍‌ର ବନ୍ଧନ

ପୃଥିବୀର ପ୍ରତ୍ୟେକ ପ୍ରାଣୀ ତା'ର ନିଜସ୍ୱ ଗୁଣରେ ମହିମାନ୍ୱିତ । ପ୍ରତ୍ୟେକର କିଛି ଚାରିତ୍ରିକ ବୈଶିଷ୍ଟତା କିଛି ବ୍ୟବହାରିକ ସ୍ୱାତନ୍ତ୍ରତା ତାକୁ ଅନ୍ୟଠାରୁ ଅଲଗା କରିଦିଏ । ଅନେକ ସମୟରେ କେତେକ ପ୍ରାଣୀର ଚାରିତ୍ରିକ ସ୍ୱାତନ୍ତ୍ରତା ଖାଲି ଆଖିକୁ ଦେଖାଯାଏ ନାହିଁ ସେତେବେଳେ ତା'ର ବ୍ୟବହାରିକ ଗୁଣ ଅଥବା ତା ଶରୀରର ନିର୍ଦ୍ଦିଷ୍ଟ ବିପାକୀୟ କାର୍ଯ୍ୟକଳାପ ଅନୁଧାବନ କରି ସେହି ପ୍ରାଣୀଟିକୁ ତା'ର ଉଚିତ ମର୍ଯ୍ୟାଦା ଦିଆଯାଏ ।

ଶମ୍ବୁକ କୁଳର ନଟିଲସ(Nautilus)ଏହିପରି ଏକ ପ୍ରାଣୀ ଯାହାକୁ ପୂର୍ବରୁ ନ ଚିହ୍ନିଥିଲେ ଗେଣ୍ଡା ବା ଶାମୁକା ଗୋଷ୍ଠୀର ଭାବିବା ସ୍ୱାଭାବିକ । ନଟିଲସର ଖୋଳପା ଦେଖିଲେ ମନେ ହେବ ଏହା ଗୋଟିଏ ପ୍ରକାରର ଶଙ୍ଖ ହେଲେ ନଟିଲସର ସ୍ନାୟୁତନ୍ତ୍ରର ଜଟିଳତା, ତା'ର ମାଂସପେଶୀର କ୍ଷିପ୍ରତା ଓ ଦୃଷ୍ଟିଶକ୍ତିର ପ୍ରଖରତା ଶଙ୍ଖ ବା ଗେଣ୍ଡାଠାରୁ ଯଥେଷ୍ଟ ଉନ୍ନତ । ଅଢ଼େଇ ହଜାର ବର୍ଷ ପୂର୍ବେ ଦାର୍ଶନୀକ ଆରିଷ୍ଟଟଲ ମୋଟାମୋଟି ନିର୍ଭୁଲ ଭାବରେ ନଟିଲସର ବ୍ୟବହାର ଓ ମିଳନକ୍ରିୟାକୁ ଲିପିବଦ୍ଧ କରିଥିଲେ । ସେଇ ରଚନାରେ ଆରିଷ୍ଟଟଲ କ୍ଷୋଭରେ ଲେଖିଥିଲେ, 'ସେ ଯାହା ଦେଖିଛନ୍ତି ତାହା କେବଳ ଏକ ସ୍ତ୍ରୀ ନଟିଲସର ଜୀବନ ବୃତ୍ତାନ୍ତ, ସ୍ତ୍ରୀ ନଟିଲସ ଗର୍ଭଧାରଣ କରୁଛି, ଗର୍ଭର ବିକାଶ ହେଉଛି ସେଥିରୁ ଛୁଆ ମଧ୍ୟ ହେଉଛି ହେଲେ ସେ ଗୋଟିଏ ହେଲେ ପୁରୁଷ ନଟିଲସର ସନ୍ଧାନ କାହିଁକି ପାଇ ନାହାନ୍ତି । ସେଦିନ ଆରିଷ୍ଟଟଲ କାହିଁକି ପୁରୁଷ ନଟିଲସର ସନ୍ଧାନ ପାଇଲେ ନାହିଁ ତା'ର କାରଣ କିଛିଟା ତାଙ୍କର ଭାଗ୍ୟ ଓ କିଛିଟା ତାଙ୍କର ତୃଟିପୂର୍ଣ୍ଣ ପର୍ଯ୍ୟବେକ୍ଷଣ । ସ୍ତ୍ରୀ ନଟିଲସ ଶରୀରରେ ଲାଗିଥିବା ଯେଉଁ ପିଣ୍ଡଟିକୁ ଆରିଷ୍ଟଟଲ କେବଳ ଏକ ପରଜୀବି କୃମି ବୋଲି ଭାବିଥିଲେ, ଅସଲରେ ତାହା ଏକ ପୁରୁଷ ଜନନାଙ୍ଗ । ତେବେ ଏହି ତଥ୍ୟ ଆବିଷ୍କୃତ ହୋଇଥିଲା ଆରିଷ୍ଟଟଲଙ୍କ ବହୁ ପରେ । ୧୮୫୩ ମସିହାରେ ଜୋହାନ୍ସ ମୁଲର ନାମକ ଜଣେ ବୈଜ୍ଞାନିକ ସିସିଲି ଉପକୂଳରେ ସାମୁଦ୍ରିକ ଜୀବମାନଙ୍କ ଉପରେ ଅନୁଧ୍ୟାନ କଲାବେଳେ ପ୍ରଥମ ଥର ଗୋଟିଏ ବାମନ ପୁରୁଷ ନଟିଲସର ସନ୍ଧାନ ପାଇଲେ । ପୁରଷଟିର ଆକାର ସ୍ତ୍ରୀ ଆକାରର ଦଶଭାଗରୁ ଭାଗେ, ଦେଖିବାକୁ ଆଠ ଗୋଡ଼ ବିଶିଷ୍ଟ ଛୋଟ ଅକ୍ଟୋପସ୍ ପରି । ଆଠଟି ଗୋଡ଼ ମଧ୍ୟରୁ ବାମ ପଟର ତୃତୀୟ ଗୋଡ଼ଟିର ମୁଣ୍ଡରେ ରହିଛି ମୂଣାଟିଏ । ଶୁକ୍ରାଶୟରୁ ମୂଣା ମଧ୍ୟରୁ ଲମ୍ବିଯାଇଛି ନଳୀଟିଏ । ନଳୀ ମଧ୍ୟ ଦେଇ ଶୁକ୍ରାଣୁ, ଶୁକ୍ରାଶୟରୁ ଆସି ଏହି ମୂଣା ଭିତରେ ସଞ୍ଚୟ ହୁଏ । ମୁଲର ଲକ୍ଷ୍ୟ କଲେ ବାମନ ନଟିଲସର ମୂଣା ଥିବା ଗୋଡ଼ଟି ହିଁ ପୁରୁଷର ଜନନାଙ୍ଗ ଯାହାକୁ ଆରିଷ୍ଟଟଲ ପରଜୀବି କୃମି ଭାବିଥିଲେ । ମିଳନର ସମୟ ହେଲେ ପୁରୁଷ ଦେହରୁ ଶୁକ୍ରାଣୁ ଥିବା ଗୋଡ଼ଟି ଆପେ ଆପେ ଛିଣ୍ଡିଯାଏ ଓ ତାହା ସାପ ପରି ହଲହଲ ହୋଇ ସ୍ତ୍ରୀ ଚାରିପଟେ ଘୁରିବୁଲେ ।

ସମୟ ବୁଝି ପରେ ସ୍ତ୍ରୀ ଶରୀରରେ ଲାଗିଯାଏ । ଡିମ୍ବାଣୁ ପରିପକ୍ୱ ହେଲେ ଏହା ସ୍ତ୍ରୀର ଶ୍ୱାସନଳୀ ମଧ ଦେଇ ଶରୀର ମଧକୁ ପ୍ରବେଶ କରେ । ପରେ ମୂଣାରୁ ଶୁକ୍ରାଣୁ ବାହାରି ଡିମ୍ବାଣୁକୁ ନିଷିକ୍ତ କରାଏ ।

ପୁରୁଷ ନଟିଲସର ସ୍ତ୍ରୀ ପ୍ରତି ଏ ଧରଣର ବ୍ୟବହାର ପ୍ରାଣୀ କୁଳରେ ଅଭିନବ କହିଲେ ଚଳେ । ସ୍ତ୍ରୀର ସାନିଧ୍ୟ ପ୍ରତି ପୁରୁଷର ଏ ଅନିହା କାହିଁକି । ନଟିଲସ କାହିଁକି ତା'ର ମିଳନ କ୍ରିୟାରେ ତା'ର ଅନ୍ୟ ଗୋତ୍ରୀୟ ଭାଇମାନଙ୍କଠୁ ଭିନ୍ନ ? କ'ଣ ପାଇଁ ସେ ସ୍ତ୍ରୀକୁ ଦୂରରୁ ଜୁହାର ହୋଇଯାଏ ?

ନଟିଲସର ସମଗୋତ୍ରୀୟ ଅକ୍ଟୋପସ୍, ଲୋଲିଗୋ, ସେପିଆ ପୁରୁଷର ସ୍ତ୍ରୀ ପ୍ରତି କୌଣସି ବିତୃଷ୍ଣା ନାହିଁ । ମିଳନ ବେଳେ ସ୍ତ୍ରୀ ଓ ପୁରୁଷର ନୃତ୍ୟ ପରେ ପୁରୁଷର ବଳିଷ୍ଠ ଆଲିଙ୍ଗନ ବେଳେ ବେଳେ ସ୍ତ୍ରୀକୁ ଅଣନିଶ୍ୱାସୀ କରିପକାଏ । ଅକ୍ଟୋପସ୍, ସେପିଆ, ଲୋଲିଗୋ ଆଦି ଶମ୍ବୁକ ବହୁ ପ୍ରାଚୀନ କାଳରୁ ମଣିଷ ସହ ପରିଚିତ । ଗ୍ରୀକ ପୌରାଣିକ ଗାଥାମାନଙ୍କରେ ଅକ୍ଟୋପସକୁ ସମୁଦ୍ରର ଦାନବ ରୂପେ ବର୍ଣ୍ଣନା କରାଯାଇଛି । ଦାର୍ଶନୀକ ଆରିଷ୍ଟଟଲ "Historia Animalium" ବହିରେ ଭୂମଧ ସାଗରରେ ମିଳୁଥିବା ସେପିଆ ବା କଟଲଫିସ୍‌ର ମିଳନ କାଳୀନ ବ୍ୟବହାରକୁ ଲକ୍ଷ୍ୟ କରି ଲେଖିଛନ୍ତି "Now cuttle fish swim about closely inter-twined with mouth and teutacles facing one another and ftling closely together..."

ସେପିଆ ପରି ଆଠଗୋଡ଼ ବିଶିଷ୍ଟ ଅକ୍ଟୋପସ୍ ପୁରୁଷର ଗୋଟିଏ ଗୋଡ଼ ଆଗରେ ଥାଏ ଶୁକ୍ରାଣୁ ଭରିଥିବା ମୁଣା । ମିଳନ ପ୍ରାରମ୍ଭରେ ପୁରୁଷ ସେଇ ଗୋଡ଼ଟିକୁ ସ୍ତ୍ରୀ ଶରୀର ଚାରିପଟେ ଆଉଁସିବା ଢ଼ଙ୍ଗରେ ବୁଲେଇ ଆଣେ । ଏଇ ସ୍ପର୍ଶରୁ ସ୍ତ୍ରୀ ଧୀରେ ଧୀରେ ଉତ୍ତେଜିତ ହୁଏ । ସ୍ତ୍ରୀର ଏହି ଉତ୍ତେଜନା ପ୍ରକାଶ ପାଏ ତା'ର ପରିବର୍ତ୍ତିତ ଲାଲରଙ୍ଗରୁ । ସ୍ତ୍ରୀର ଉତ୍ତେଜନା ସାଙ୍ଗକୁ ପୁରୁଷ ମଧ ଉତ୍ତେଜିତ ହୁଏ ଏବଂ ତା'ର ରଙ୍ଗ ମଧ ପରିବର୍ତ୍ତିତ ହୁଏ । ଉତ୍ତେଜିତ ଅବସ୍ଥାରେ କିଛି ସମୟ ରହିଲା ପରେ ପୁରୁଷ ଯେବେ ଅନୁଭବ କରେ ଚରମ ସମୟ ଉପସ୍ଥିତ ସେତେବେଳେ ସେ ତା'ର ଶୁକ୍ରାଣୁ ମୂଣାଥିବା ଗୋଡ଼ଟିକୁ(Hectocotylized arm) ସ୍ତ୍ରୀର ନିଶ୍ୱାସ ନେବା ବାଟ ମଧ ଦେଇ ଶରୀର ମଧକୁ ପୂରେଇ ଦିଏ । ନିଃଶ୍ୱାସ ଯିବା ଆସିବା ବାଟ ମଧ ଦେଇ ଗୋଡ଼ ଭିତରକୁ


ଅକ୍‌ଟୋପସର ମିଳନ । ସ୍ତ୍ରୀ ଅକ୍‌ଟୋପସ ଶ୍ୱାସନଳୀ ଭିତରକୁ ପୁରୁଷର ଶୁକ୍ରାଣୁ ଥିବା ମୂଣା ପ୍ରବେଶ

ଯିବାରୁ ସ୍ତ୍ରୀ ଅଣନିଶ୍ୱାସୀ ହୋଇ ଛାଟିପିଟି ହୁଏ ଓ ସମସ୍ତ ଶକ୍ତିନେଇ ପୁରୁଷର ବନ୍ଧନରୁ ମୁକ୍ତ ହେବାକୁ ଚେଷ୍ଟା କରେ, ହେଲେ ପୁରୁଷର ବଳିଷ୍ଠ ବନ୍ଧନରୁ ସହଜରେ ମୁକ୍ତି ପାଏ ନାହିଁ । ଚରମ ଅବସ୍ଥାରୁ ଓହରି ପୁରୁଷ ଯେବେ ଦେଖେ ସ୍ତ୍ରୀ ଅଣନିଶ୍ୱାସୀ ହୋଇ ବେହୋସ ହେବାକୁ ବସିଲାଣି ସେତେବେଳେ ସେ ପୁରେଇଥିବା ଗୋଡ଼ଟିକୁ ସ୍ତ୍ରୀ ଶରୀର ମଧ୍ୟରୁ ବାହାରକୁ ନେଇ ଆସେ ଓ ଧୀରେ ଧୀରେ ସ୍ତ୍ରୀକୁ ଆଲିଙ୍ଗନ ମୁକ୍ତ କରେ । ଶୁକ୍ରାଣୁ ଥିବା ମୂଣାଟି ସ୍ତ୍ରୀ ଶରୀର ମଧ୍ୟରେ ପ୍ରବେଶ କରି ସେଠାର ପରିବେଶରେ ଫୁଲି ଉଠେ ଓ ପରେ ପରେ ଫାଟିଯାଏ । ବେଳେ ବେଳେ ମୂଣାଟି ସ୍ତ୍ରୀ ଶରୀର ଭିତରେ ପରଜୀବି ରୂପେ ବଞ୍ଚି ରୁହେ । ଡିମ୍ବାଣୁ ପରିପକ୍ୱ ହେଲେ ଶୁକ୍ରାଣୁ ମୂଣାରୁ ବାହାରି ଡିମ୍ବାଣୁକୁ ନିଷିକ୍ତ କରାଏ । ନିଷିକ୍ତ ଡିମ୍ବାଣୁଗୁଡ଼ିକୁ ସ୍ତ୍ରୀ ପଥର ସନ୍ଧିମାନଙ୍କରେ ଛାଡ଼ି ଦିଏ ଓ ସେଇଠାରେ ଜଗି ରୁହେ । ମଝିରେ ମଝିରେ ପାଣିକୁ ଚହଲେଇ ଦିଏ । ଅଣ୍ଡା ଫୁଟି ଛୁଆ ବାହାରିଲେ ମା' ସେ ସ୍ଥାନ ତ୍ୟାଗ କରି ଅନ୍ୟତ୍ର ଚାଲିଯାଏ । ଅକ୍ଟୋପସ୍, ସେପିଆ ଆଦି ଶମ୍ବୁକମାନଙ୍କ ଅଣ୍ଡାରୁ ଲାର୍ଭା ବାହାରେ ନାହିଁ, ସେଥିରୁ ସିଧା ସଳଖ ଛୁଆ ବାହାରେ ।

# ତାରା ମାଛର ଆତ୍ମ ବିଚ୍ଛେଦ

ଅନ୍ଧର ନାଁ ପଦ୍ମଲୋଚନ ହେଲା ପରି, ମାଛର କୌଣସି ଗୁଣ ନଥାଇ ପାଞ୍ଚଟି ହାତ/ଗୋଡ଼ ଥିବା ଇକାଇନୋଡରମାଟା (Echinodermata) ବା କଣ୍ଟକବର୍ମ କୁଳର ଏହି ପ୍ରାଣୀଟିର ନାଁ ତାରାମାଛ କାହିଁକି ହେଲା କହିବା କଷ୍ଟ । ତାରାମାଛଟିଏ ଦେଖିଲେ ମନେ ହେବ ଏହା ବୋଧହୁଏ ସେଇ ସମସ୍ତ ନିମ୍ନମାନର ଅମେରୁଦଣ୍ଡୀ ପ୍ରାଣୀମାନଙ୍କ ମଧ୍ୟରୁ ଗୋଟିଏ । ଯେଉଁମାନେ ସମୁଦ୍ର ତଳର କୌଣସି ପଥର କୋରଡ଼ରେ ନିରୁଦ୍ୱେଗରେ ଜୀବନ ବିତାନ୍ତି । ବ୍ୟବହାରରେ ମଧ ତାରାମାଛ ନିମ୍ନମାନର ପ୍ରାଣୀ ପରି ଭୀଷଣ ଅଳସୁଆ । ଏ ସମସ୍ତ ଗୁଣ ତତ୍ତ୍ୱ ପ୍ରାଣୀତତ୍ତ୍ୱବିତ୍‌ମାନେ ତାରାମାଛ କୁଳର ପ୍ରାଣୀମାନଙ୍କୁ ଅମେରୁଦଣ୍ଡୀ କୁଳର ସବୁଠାରୁ ଉନ୍ନତ ପ୍ରାଣୀ ରୂପରେ ଆଖ୍ୟାୟିତ କରିଛନ୍ତି । ଏହାର ଅନ୍ୟତମ କାରଣ ତାରାମାଛ ତା'ର ଜୀବନ ଚକ୍ରରେ ଏପରି ଏକ ଲାର୍ଭା ବହନ କରୁଛି ଯାହାର ଚାରିତ୍ରିକ ବୈଶିଷ୍ଟତା ସିହିତ ନିମ୍ନମାନର ମେରୁଦଣ୍ଡୀ ପ୍ରାଣୀର ସାମଞ୍ଜସ୍ୟ ରହିଛି ।

ଅମେରୁଦଣ୍ଡୀ କୁଳର ସବୁଠାରୁ ଉନ୍ନତ ତାରାମାଛର ମିଳନକ୍ରିୟା ବା ମିଳନକାଳୀନ ବ୍ୟବହାର ଅତି ନିମ୍ନମାନର । ପତଙ୍ଗକୁଳ ବା ଶମ୍ବୁକ କୁଳରେ ଦେଖାଯାଇଥିବା ବିଚିତ୍ର ବ୍ୟବହାର କଣ୍ଟକବର୍ମ କୁଳରେ ଦେଖାଯାଏ ନାହିଁ । ନିର୍ଦ୍ଦିଷ୍ଟ ସମୟରେ ପୁରୁଷ ଓ ସ୍ତ୍ରୀ ତାରାମାଛ ଶୁକ୍ରାଣୁ ଓ ଡିମ୍ବାଣୁଗୁଡ଼ିକୁ ପାଣିରେ ଛାଡ଼ିଦିଅନ୍ତି । ପାଣିରେ ଡିମ୍ବାଣୁ ନିଷିକ୍ତ ହୁଏ ପରେ ପରେ ଡିମ୍ବାଣୁର ବୃଦ୍ଧିହୋଇ ସେଥିରୁ ଲାର୍ଭା ବାହାରେ । ଏହି ଲାର୍ଭା ସହ ନିମ୍ନମାନର ମେରୁଦଣ୍ଡୀ 'ସାଲପା' ଓ 'ଡୋଲିଅଲମ' ଆଦି ପ୍ରାଣୀର ଯଥେଷ୍ଟ ସାମଞ୍ଜସ୍ୟ ରହିଛି ।

ମିଳନକ୍ରିୟାରେ ବୈଚିତ୍ର୍ୟ ଆଣିବା ପାଇଁ ପ୍ରତ୍ୟେକ ପ୍ରାଣୀ ତା'ର ନିଜସ୍ୱ ଢଙ୍ଗରେ ସଦା ଚେଷ୍ଟିତ । ପ୍ରାଣୀ ବିବର୍ତ୍ତନ ସିଡ଼ିରେ ଯେତେ ଉପରକୁ ଚଢ଼ିଛି ତା'ର ବ୍ୟବହାରରେ ସେଇ ମୁତାବକ ସଂହତି ଆସିଛି । ଏ ନିୟମ ତାରାମାଛ ପାଇଁ ଲାଗୁ ନୁହେଁ । ତାରାମାଛର ଗଠନ ତାର ପୁନର୍ଉତ୍ପାଦନ କ୍ଷମତା ଓ ବ୍ୟବହାରରେ ଶିଥିଳତା ଯେ କୌଣସି ନିମ୍ନବର୍ଗ ପ୍ରାଣୀ ସହ ତୁଳନୀୟ । ତାରାମାଛର ଏହି ପଛକୁ ଅନେଇବା ଗୁଣ କ'ଣ ପାଇଁ ? ମିଳନ କ୍ରିୟାରେ ଏହି ବିତୃଷ୍ଣା କାହିଁକି ? ତେବେ ମିଳନ କ୍ରିୟାରେ ଯେତେ ଅନୀହା ଥାଉନା କାହିଁକି ସନ୍ତାନ ଲାଳନରେ ତାରାମାଛ ବେଶୀ ପାରଙ୍ଗମ । ସନ୍ତାନକୁ ଶତ୍ରୁ କବଳରୁ ରକ୍ଷା ଲାଗି ତାରାମାଛ ପିଲା କାଖେଇଲା ପରି ପାଞ୍ଚଟି ହାତ ସାହାଯ୍ୟରେ ସନ୍ତାନକୁ କୋଳେଇ ନିଏ । ଏହି ସମୟରେ ତାରାମାଛଟିକୁ ଲକ୍ଷ୍ୟ କଲେ ମନେହେବ ସତେ ଅବା ସେ ସନ୍ତାନକୁ ନେଇ ଅମୃତଧାରା ପାନ କରାଉଛି । କେତେ ପ୍ରଜାତିର ତାରାମାଛ କୁକୁଡ଼ା ଅଣ୍ଡା ଉଷୁମ କଲାପରି ନିଷିକ୍ତ ଅଣ୍ଡାକୁ ଲାର୍ଭା ବାହାରିବା ଯାଏ କୋଳ ଭିତରେ ଦାବି ନିଅନ୍ତି; କେତେକ ପଥର ସନ୍ଧିମାନଙ୍କରେ ଅଣ୍ଡା ଦେଇ ତାହାକୁ ଜଗି ବସନ୍ତି ।



ତାରାମାଛ

ସନ୍ତାନ ଲାଳନ ପରି ଏକ ଉନ୍ନତ ବ୍ୟବହାର ଦେଖାଇବା ସତ୍ତ୍ୱେ ତାରାମାଛ ଆବଶ୍ୟକ ହେଲେ ନିମ୍ନବର୍ଗର ହାଇଡ୍ରା ଅଥବା ସ୍ପଞ୍ଜମାନଙ୍କ ପରି ନିଜ ଶରୀରର ଖଣ୍ଡିତ ଅଂଶରୁ ମଧ୍ୟ ବଂଶବୃଦ୍ଧି କରିଥାଏ । ନିଜ ଶରୀରର ଖଣ୍ଡିତ ଅଂଶରୁ ବଂଶବୃଦ୍ଧି ସନ୍ଧିପଦ, କୀଟପତଙ୍ଗ ଅଥବା ଶମ୍ବୁକ ଆଦି ପ୍ରାଣୀରେ ଦେଖଯାଏ ନାହିଁ । ତେବେ ତାରା ମାଛର ଏହି ପୁନରୁଦ୍ଭବନ (Re-generation) ପଦ୍ଧତିକୁ ଆବୋରୀ ନେବାର କାରଣ କ'ଣ ? ବିବର୍ତ୍ତନ ସିଡ଼ିରେ ଉପରକୁ ଚଢ଼ି ମଧ ବଂଶବୃଦ୍ଧି ପାଇଁ ପୁଣି ସେ କାହିଁକି ପଛକୁ ଅନେଇଛି ?

ଏହାର ଉତ୍ତର ଖୋଜିବାକୁ ହେଲେ ଅମେରୁଦଣ୍ଡୀ କୂଳରୁ ଆଉଟିକେ ଡନଖି ଦେଖିବା ଆବଶ୍ୟକ । ମେରୁଦଣ୍ଡୀ କୂଳରେ ବିବର୍ତ୍ତନ ଘଟଣାବଳୀ ଦିବାଲୋକ ପରି ସ୍ୱଚ୍ଛ । ଗୋଟିଏ ସରଳରେଖାରେ ମାଛ ପରେ ବେଙ୍ଗ ପଛକୁ ପଛ ସରୀସୃପ ସେଥିରୁ ଉଦ୍ଭବ ହୋଇଛି ଗୋଟିଏ ଦିଗରେ ବିହଙ୍ଗ ଓ ଅନ୍ୟ ପଟେ ସ୍ତନ୍ୟପାୟୀ । ଅପରପକ୍ଷରେ ବିବର୍ତ୍ତନ ଧାରାରେ ଅମେରୁଦଣ୍ଡୀ କୂଳରେ ଆସିଛି ଅନେକ ଶାଖା ପ୍ରଶାଖା । ତେଣୁ କେଉଁ ଗୋଷ୍ଠୀ ସହ କେଉଁ ଗୋଷ୍ଠୀର ଅଧିକ ମେଳ ବା କେଉଁ କୂଳ ସହ କେଉଁ କୂଳର ସାମଞ୍ଜସ୍ୟ ନିର୍ଣ୍ଣୟ ବେଳେ ବିଜ୍ଞାନୀମାନେ ଧନ୍ଦାରେ ପଡ଼ିଛନ୍ତି । ଅନେକ ବୈଜ୍ଞାନିକମାନଙ୍କ ମତରେ ତାରାମାଛ ଜାତୀୟ ଇକାଇନୋଡରମାଟା ଶମ୍ବୁକ କୂଳ ଏବଂ କୀଟପତଙ୍ଗ କୂଳ, ଟ୍ରୋକୋଫୋର ଜାତୀୟ ଲାର୍ଭାରୁ ଉଦ୍ଭବ ହୋଇଛନ୍ତି । ପ୍ରଥମ ଅବସ୍ଥାରେ ଏହି ତିନୋଟି ବିଜାତୀୟ ଗୋଷ୍ଠୀ ମଧରେ ଅନେକ ସାଦୃଶ୍ୟ ହୁଏତା ଥିଲା ପରେ ପରିବେଶ ଗତ କାରଣ ଅର୍ଥାତ୍ ପରିବେଶ ସହ ଖାପ ଖୁଆଇବା ପାଇଁ ପ୍ରତ୍ୟେକ ବିଭିନ୍ନ ରୂପରେ ପରିବର୍ଦ୍ଧିତ ହୋଇଛନ୍ତି । ପରିବର୍ତ୍ତନ ଖାପ ଖୁଆଇବା ପାଇଁ ପ୍ରତ୍ୟେକ ବିଭିନ୍ନ ରୂପରେ ପରିବର୍ତ୍ତିତ ହୋଇଛନ୍ତି । ପରିବର୍ତ୍ତନ ବେଳେ କିଏ ଅତୀତକୁ ସମ୍ପୂର୍ଣ୍ଣ ପାଶୋରୀ ନୂତନକୁ ଆଦରି ନେଇଛି, କିଏ ନୂତନ ସହ ଅତୀତର କିଛି ଗୁଣକୁ ମଧ ବହନ କରିଛି । ନିଜ ଶରୀରର ଖଣ୍ଡିତ ଅଂଶରୁ ପୁନୋରୁଦ୍ଭବନ ପ୍ରକ୍ରିୟାରେ ବଂଶବୃଦ୍ଧି ଅମେରୁଦଣ୍ଡୀ କୂଳରେ କିଛି ନୂଆ କଥା ନୁହେଁ । କିଏ ଏହି ପ୍ରଥାକୁ ସମ୍ପୂର୍ଣ୍ଣ ପାଶୋରୀ ଦେଇଥିବା ସ୍ଥଳେ ତାରାମାଛ ସେ ସ୍ମୃତିକୁ ବହନ କରୁଛି ।

ତାରାମାଛର ପୁନରୁଦ୍ଭବନ ପ୍ରକ୍ରିୟାକୁ ଲକ୍ଷ୍ୟକରି ବ୍ଲସ୍ ଲେଖିଛନ୍ତି, "a divorce with special retirement that no modern novel of manners has as yet conceived : for the starfish divorces itself from itself." ନିଜର ସମସ୍ତ ସତ୍ତାକୁ ନିଜ ପାଖରୁ ଛଡ଼େଇ ନେଇ ଏକରୁ ବହୁ ହେବା କ'ଣ ନିଜ ପାଖରେ ମୃତ୍ୟୁ ଅଥବା ଏକ ନୂତନ ଜୀବନ ପ୍ରତି ଆହ୍ୱାନ ?

# ବୈଚିତ୍ରମୟ ପତଙ୍ଗ

ପ୍ରାଣୀ ଜଗତରେ ପତଙ୍ଗକୁଳ ତା'ର ବ୍ୟବହାର, ଆକାର ଓ ପ୍ରକୃତି ସହ ମନେଇ ନେବାର କ୍ଷମତା ପାଇଁ ଏକ ବିଶେଷ ସ୍ଥାନ ଅଧିକାର କରିଛି । କେହି ଜଣେ ପତଙ୍ଗବିଦ୍ ଥରେ କହିଥିଲେ ଯଦି କୌଣସି କାରଣରୁ ଧରାପୃଷ୍ଠରୁ ମଣିଷ ଅବଲୁପ୍ତ ହୋଇଯାଏ ତେବେ ଏ ପୃଥିବୀରେ ରାଜୁତି କରିବାର କ୍ଷମତା କେବଳ ପତଙ୍ଗକୁଳର ରହିଛି । ଏ ପୃଥିବୀକୁ ମଣିଷ ଆସିବାର ବହୁ ପୂର୍ବରୁ ପତଙ୍ଗ ପୃଥିବୀକୁ ଆସିଛି । ଆସିବା ପରଠୁ କେବଳ ଗୋଟିଏ ପରିବେଶରେ ଆବଦ୍ଧ ନ ରହି ବିଭିନ୍ନ ପ୍ରାକୃତିକ ପରିବେଶକୁ ସେ ନିଜ ଅକ୍ତିଆରରେ ନେଇ ନେଇଛି । କେତେବେଳେ ସେ ରହୁଛି ମାଟି ତଳେ, ପୁଣି କେତେବେଳେ ପାଣି ଉପରେ, ଦରକାର ପଡ଼ିଲେ ଝୁଲନ୍ତ ଅବସ୍ଥାରେ ମଧ୍ୟ ସେ ଜୀବନ ବିତାଇ ପାରୁଛି । ଗୋଷ୍ଠିଚେତନା, କାର୍ଯ୍ୟବଣ୍ଟନ ଓ ସଙ୍ଘବଦ୍ଧତା ଆଦି ଗୁଣକୁ ଯଦି ଉନ୍ନତ ଗୁଣ ରୂପେ ଗ୍ରହଣ କରାଯାଏ ତେବେ ଉଇ, ମହୁମାଛି ଆଦି ପତଙ୍ଗ ସମାଜରେ ଏ ବ୍ୟବସ୍ଥାର ପଟାନ୍ତର ନାହିଁ । ମିଳନ ସଙ୍ଗୀତ, ପ୍ରିୟାର ମନ ତୋଷିବା ପାଇଁ ପ୍ରୀତି ଉପହାର ଆଦି ପ୍ରଥାର ପଥ ପ୍ରଦର୍ଶକ ପତଙ୍ଗକୁଳ । ନୃସଂଶତାରେ ପତଙ୍ଗର ସମକକ୍ଷ ଆଉ କିଏ ଅଛି ବୋଲି ମୋର ଧାରଣା ନାହିଁ । ମିଳନ ପରେ ପରେ ପ୍ରିୟାର ମୁଣ୍ଡକୁ ଦେହରୁ ଅଲଗା କରିଦେବାଠୁ ଆରମ୍ଭ କରି, ମିଳନ ଯାତ୍ରା ଶେଷରେ ପୁରୁଷକୁ ନିଜ ଅନୁଗାମୀମାନଙ୍କ ଦ୍ୱାରା କ୍ଷତ ବିକ୍ଷତ କରି ଛାଡ଼ି ପଳେଇ ଆସିବା ପରି ଗୁଣ ପତଙ୍ଗମାନେ ହିଁ ବହନ କରନ୍ତି । ସନ୍ତାନ ଲାଳନ ପରି ସ୍ୱର୍ଗୀୟ ଗୁଣରେ ମଧ୍ୟ ସେମାନେ ପଛପା ନୁହନ୍ତି ।

ପତଙ୍ଗକୁ ଚିହ୍ନିବା ସହଜ । ଏହା ଶରୀରରେ ରହିଛି ତିନୋଟି ପ୍ରଧାନ ଭାଗ ମୁଣ୍ଡ, ବେକ ଓ ନିମ୍ନାଙ୍ଗ । ପ୍ରାୟ ପ୍ରତ୍ୟେକ ପତଙ୍ଗର ମୁଣ୍ଡରେ ରହିଛି ଦୁଇଟି ଆଖି ଦେଖିବା ପାଇଁ ଓ ଦୁଇଟି ଶୁଣ୍ଢ ସ୍ପର୍ଶ କରିବା ପାଇଁ । ଏହା ଛଡ଼ା ପ୍ରତ୍ୟେକ ପତଙ୍ଗର ପାଟିରେ ରହିଛି ତାର ନିଜସ୍ୱ



ପ୍ରେଇଂଗ ମ୍ୟାନଟିସ
ସ୍ତ୍ରୀ ମ୍ୟାନଟିସ୍‌ର ପୁରୁଷ ଶରୀର ଭକ୍ଷଣ ପରେ

ବିଶେଷତ୍ୱ । ଖାଦ୍ୟର ରୁଚୀ ଅନୁଯାୟୀ ପତଙ୍ଗର ପାଟି ସେଇଭଳି ଗଠିତ । ତେଣୁ ରକ୍ତ ଶୋଷକ ମଶାର ପାଟି ଇଞ୍ଜେକ୍‌ସନ୍ ଛୁଞ୍ଚିଭଳି ହୋଇଥିବାବେଳେ, ସର୍ବଭୁକ ଅସରପାର ପାଟି ଖାଦ୍ୟକୁ ଛୋଟ ଛୋଟ କାଟି ତାକୁ ଗିଳିବାରେ ସାହାଯ୍ୟ କରିଥାଏ । ପତଙ୍ଗର ଅନ୍ୟ ଏକ ଚରିତ୍ର ତା'ର ଛଅଟି ଗୋଡ଼ । ସାଧାରଣତଃ ପ୍ରତ୍ୟେକ ପତଙ୍ଗ ଅଣ୍ଡା ଦିଅନ୍ତି । ଅଣ୍ଡାର ବୃଦ୍ଧି ହୋଇ ସେଥିରୁ ଲାର୍ଭା ବାହାରେ ପରେ ଲାର୍ଭା ରୂପାନ୍ତରିତ ହୋଇଥାଏ ।

ପୃଥିବୀରେ ପତଙ୍ଗକୁ ଯଦି କେହି ସମ୍ମାନ କରେ ଓ ପତଙ୍ଗର ଆଗମନ ପାଇଁ ତୋରଣ ସଜାଏ ତେବେ ସେମାନେ ହେଉଛନ୍ତି ସପୁଷ୍ପକ ଉଦ୍ଭିଦ । ପତଙ୍ଗର ଆଗମନରେ ହିଁ ପରାଗସଙ୍ଗମ ଏବଂ ଜୀବନର ଜୟଯାତ୍ରା ।

ଏହି ପ୍ରସଙ୍ଗରେ ଲିନିୟସ (Linnaeus) "Nuptials of Flowers" ବହିରେ ଲେଖିଛନ୍ତି "ବସନ୍ତ ଆସିଛି ସାଙ୍ଗରେ ଆଣିଛି ଉଜ୍ଜ୍ୱଳ ସୂର୍ଯ୍ୟକିରଣ ଉଦ୍ଭିଦ ମଧ ଅନଙ୍ଗ ପାଶରେ ହୋଇଛି ଆବଦ୍ଧ । ଫୁଲର ପାଖୁଡ଼ା ସତେ ଅବା ବାସର ଶଯ୍ୟା । ଶଯ୍ୟାରେ ପ୍ରିୟା ଅପେକ୍ଷା କରୁଛି ନିଭୃତରେ । ପ୍ରିୟତମକୁ ନେଇ ଆସିଛି ପତଙ୍ଗ । ଧୀରେ ଧୀରେ ପାଖୁଡ଼ା ଖୋଲି ଛାଡ଼ି ଦେଇଛି ପ୍ରିୟତମକୁ ତା'ର ପ୍ରିୟା ପାଖରେ ।"

ମଣିଷ ସହିତ ପତଙ୍ଗର ସମ୍ପର୍କ ମଧୁର ନୁହେଁ । ପୂରାକାଳରେ ମଣିଷକୁ ଯଦି କେହି ଦେଶାନ୍ତରିତ ଓ ତାକୁ ଯାଯାବର ଜୀବନଯାପନରେ ବାଧ କରେଇଥାଏ ତେବେ ସେମାନେ ହେଲେ ପତଙ୍ଗକୁଳର ସେତସି ମାଛି । ଜିନତତ୍ତ୍ୱବିତ୍ ଆଲାନ୍ ଉଇଲସନ୍ କହନ୍ତି, ଆଫ୍ରିକାର 'ଆକା' ପରିବାର ପୃଥିବୀର ସବୁଠାରୁ ପ୍ରାଚୀନ ପରିବାର । ଲକ୍ଷେ ବର୍ଷ ପୂର୍ବେ ଆଫ୍ରିକାର ସାଭାନା ଅଞ୍ଚଳରେ ଆକା ପରିବାର ଗୁଳ୍ଲୁରାଣ ମେଣ୍ଢାଉଥିଲେ । ଜୀବନ ଥିଲା ଅଳସ, ମନ୍ଥର ଓ ଉଦ୍‌ବେଗହୀନ । ନିଜ ପାରିପାର୍ଶ୍ୱିକ ଅବସ୍ଥା ସହ ମନେଇ ସେମାନେ ସୁଖରେ ଥିଲେ । ତା'ପରେ ଦିନେ ଏକ ଅଶୁଭ ଆତ୍ମା ତାଙ୍କର ସବୁ ସୁଖ ଶାନ୍ତି ଛଡ଼େଇ ନେଲା । ଘରେ ଘରେ ସମସ୍ତେ ଜ୍ୱରରେ ଆକ୍ରାନ୍ତ ହେଲେ । ସେଇ ଜ୍ୱର ଥିଲା ଆଫ୍ରିକାର ଆତଙ୍କ କାଳଜ୍ୱର (Sleeping Sickness) । କାଳଜ୍ୱର କବଳରୁ ସେଦିନ ରକ୍ଷା ପାଇବାର ଏକମାତ୍ର ଉପାୟ ଥିଲା ସେ ସ୍ଥାନ ଛାଡ଼ି ବହୁଦୂରକୁ ପଳାୟନ । ହ୍ୟାମବର୍ଗ ଇନଷ୍ଟିଚ୍ୟୁଟ୍ ଅବ ଟ୍ରପିକ୍ୟାଲ୍ ମେଡ଼ିସିନ୍‌ର ପ୍ରଫେସର ସାଚ ବିଶ୍ୱାସ କରନ୍ତି ସେତସି ମାଛି ହିଁ ମଣିଷକୁ ଦେଶାନ୍ତର ଗମନରେ ବାଧ କରେଇଛି । ଦେଶାନ୍ତର ଯିବା ଦ୍ୱାରା ମଣିଷର ଗୋଟିଏ ସୁବିଧା ହୋଇଛି, ମଣିଷ ପୃଥିବୀର ବିଭିନ୍ନ ପରିବେଶର ସଂସ୍ପର୍ଶରେ ଆସିଛି ଏବଂ ସେଇ ମୁତାବକ ନିଜ ବୁଦ୍ଧି ବଳରେ ବିଭିନ୍ନ ପରିବେଶରେ ନିଜକୁ ମନେଇ ନେଇଛି । ଆଜି ପୃଥିବୀରେ ବିଭିନ୍ନ ଜାତି ଉପଜାତିର ଲୋକ ବାସ କରୁଛନ୍ତି, ଇଂରାଜୀରେ ଆମେ ଯାହାକୁ 'ରେସ' (Race) କହୁ ରେସ ଉତ୍ପତ୍ତିର ଅନେକ କାରଣ ମଧ୍ୟରୁ ଅନ୍ୟତମ କାରଣ ପତଙ୍ଗ କୁଳର ସେତସି ମାଛି ।

ଏବେ ମଧ ମଣିଷ ଓ ପତଙ୍ଗର ସମ୍ପର୍କ ମଧୁର ନୁହେଁ । ମହୁମାଛି ଆଦି କେତେକ ପତଙ୍ଗକୁ ଛାଡ଼ିଦେଲେ ମଣିଷ ଓ ପତଙ୍ଗ ଭିତରେ ସଦାବେଳେ ଯୁଦ୍ଧ ଲାଗିରହିଛି । କେତେ ପ୍ରକାର କୀଟନାଶକ ଆବିଷ୍କୃତ ହେଲାଣି ହେଲେ ପତଙ୍ଗ ଦାଉରୁ ସେ ଏଯାଏଁ ରକ୍ଷା ପାଇ ନାହିଁ ।

# ସୁବାଷିତ ଆମନ୍ତ୍ରଣ

ଭାବର ଆଦନପ୍ରଦାନ ପାଇଁ ଉଚ୍ଚତର ପ୍ରାଣୀମାନଙ୍କଠି ଅନେକ ଉପାୟ ମାନ ରହିଛି । ମଣିଷ ଭାଷା ସାହାଯ୍ୟରେ ଭାବର ଆଦାନ ପ୍ରଦାନ କରେ । ଆଖିର ଅବଶ୍ୟ ନିଜସ୍ୱ ଏକ ଭାଷା ରହିଛି । ତେବେ ସେ ଭାଷାର କୌଣସି ବ୍ୟାକରଣ ନାହିଁ । ଏହି ବ୍ୟାକରଣ ନଥିବା ଭାଷାରେ ଇତର ପ୍ରାଣୀମାନେ ଯୋଗାଯୋଗ କରନ୍ତି । ଏଥିପାଇଁ କାହା ଦେହରୁ ସୁବାଷ ବାହାରେ କିଏ ଗୋଡ଼ ସାହାଯ୍ୟରେ ଶବ୍ଦ ତରଙ୍ଗ ସୃଷ୍ଟି କରେ ଆଉ କିଏ ଶରୀରର ରଙ୍ଗ ବଦଳେଇ ମନ କଥା ଜଣାଏ ।

ସେଦିନଟି ଥିଲା ମେ ମାସର ଏକ ଉଷ୍ଣ ସକାଳ । ବିଖ୍ୟାତ କୀଟତତ୍ତ୍ୱବିତ୍ ଜ୍ୟାଁ ହେନରୀ ଫ୍ୟାବର ତାଙ୍କ ଲ୍ୟାବରେଟୋରୀରେ କାମ କରୁଥାନ୍ତି । ଫ୍ୟାବର ଲକ୍ଷ୍ୟ କଲେ ଏକ ବଡ଼ ସ୍ତ୍ରୀ ମଥ ଯାହାର ଇଂରାଜୀ ନାଁ 'ପିକକ୍ ଏମପରର ମଥ' ଝରକା ଦେଇ ତାଙ୍କ ଲ୍ୟାବରେଟୋରୀ ଭିତରକୁ ପଶି ଆସିଲା । ତା'ପରେ ଛାତର ଗୋଟିଏ କଣରେ ସ୍ଥିର ହୋଇ ବସିଲା । ସେଇ ସନ୍ଧ୍ୟାରେ ସ୍ତ୍ରୀ ମଥର ସନ୍ଧାନରେ ଶହ ଶହ ପୁରୁଷ ମଥ ଫ୍ୟାବରଙ୍କ ଲ୍ୟାବରେଟୋରୀକୁ ଘେରି ଗଲେ ।



ପ୍ରଜାପତି

ତା'ପରେ ସ୍ତ୍ରୀ ମଥଟିକୁ ସାଙ୍ଗରେ ଧରି ସେମାନେ ଫେରିଗଲେ । ଦି ଦିନପରେ ସ୍ତ୍ରୀ ମଥଟି ପୁଣି ଆସିଲା, ଏଥର ଫ୍ୟାବର ମଥଟିକୁ ଗୋଟିଏ ତାର ଜାଲି ଥିବା ବଡ଼ ଡବାରେ ଘୋଡ଼ାଇ ରଖିଲେ । ସେଦିନ ସନ୍ଧ୍ୟାରେ ମେଘ ଘୋଟେଇ ଥିଲା ଏବଂ ଯୋରରେ ପବନ ମଧ ବହୁଥିଲା । ଫ୍ୟାବରଙ୍କ ଲ୍ୟାବରେଟୋରୀଟି ଥିଲା ଗୋଟିଏ ବଗିଚା ଭିତରେ, ଲ୍ୟାବରେଟୋରୀ ଚାରି ପଟେ ବଡ଼ ବଡ଼ ଗଛ । ପବନ ସାଙ୍ଗକୁ ଗଛଗୁଡ଼ିକ ମଧ ସମାନ ତାଳରେ ମୁଣ୍ଡ ହଲେଇ ନିଶ୍ୱାସ ଛାଡୁଥିଲେ । ଫ୍ୟାବର ଆଶା କରିଥିଲେ ସ୍ତ୍ରୀ ମଥର ସନ୍ଧାନରେ ପୁରୁଷମାନେ ନିଶ୍ଚେ ଆସିବେ । ସେଥିପାଇଁ ଗୋଟିଏ ଝରକା ମଧ ଖୋଲା ରଖିଥିଲେ । ହେଲେ ସନ୍ଧ୍ୟା ବେଳେ ଯେବେ ସେମାନେ ନ ଆସିଲେ ଫ୍ୟାବର ମନେ ମନେ ଭାବିଲେ ବୋଧହୁଏ ଖରାପ ପାଗ ପାଇଁ ପୁରୁଷମାନେ ସ୍ତ୍ରୀର ସନ୍ଧାନରୁ ବିରତ ଅଛନ୍ତି, ଅଥବା ବାଟ ବଣା ହୋଇଛନ୍ତି । ମାତ୍ର ଫ୍ୟାବରଙ୍କ ଆଶଙ୍କା ମିଥ୍ୟା ହେଲା, ଆଠଟାରୁ ଦଶଟା ଭିତରେ ପୁରୁଷ ମଥ ମାଡ଼ିଆସିଲେ ଓ ଡବା ଚାରିପଟେ ଘେରି ଗଲେ । ଫ୍ୟାବର ଲକ୍ଷ୍ୟ କଲେ ସେମାନଙ୍କ ସଂଖ୍ୟା କ୍ରମେ ବଢୁଛି । ସେଦିନ ଫ୍ୟାବର ବୁଝିପାରି ନଥିଲେ କେଉଁ ଆକର୍ଷଣରେ ପୁରୁଷମାନେ ସ୍ତ୍ରୀର ପିଛା ଛାଡ଼ୁ ନାହାନ୍ତି, ସେମାନେ କିପରି ବାଟ ଚିହ୍ନୁଛନ୍ତି, ଅନ୍ଧାର ରାତିରେ ଆଲୋକର ପ୍ରଶ୍ନ ନାହିଁ । ତେବେ କ'ଣ କିଛି ଶବ୍ଦ ? ଯେଉଁ ଶବ୍ଦ ମଣିଷର କାନ ବାରି ପାରୁନାହିଁ, ଅଥବା କିଛି ସୁବାଷ ? ଫ୍ୟାବନ ଆଶ୍ଚର୍ଯ୍ୟ ହେଲେ ଝଡ଼ ରାତିରେ ସ୍ତ୍ରୀ ମଥ ଦେହରୁ ବାହାରୁ ଥିବା ସୁବାଷ କିଭଳି ମାଇଲ ମାଇଲ ଦୂରକୁ ପହଞ୍ଚିଲା ? ଫ୍ୟାବର କିଛି ପୁରୁଷ ମଥର ଶୁଣ୍ଡରେ ମହମ ଲଗେଇ ଦେଲେ, ଆଉ କେତେକଙ୍କ ଶୁଣ୍ଢକୁ କାଟି ନେଲେ । ଫ୍ୟାବର ଲକ୍ଷ୍ୟ କଲେ ଶୁଣ୍ଢ କଟା ହୋଇଥିବା ପୁରୁଷ ମଥ ସ୍ତ୍ରୀର ଯନ୍ତା ପାଖକୁ ପହଞ୍ଚି ପାରୁ ନାହିଁ । ହେଲେ ମହମଲଗା ପୁରୁଷର ଶୁଣ୍ଢରୁ ମହମ ଛଡ଼େଇ ଦେଲେ ସେ ସ୍ତ୍ରୀ ପାଖକୁ ପହଞ୍ଚି ପାରୁଛି । ଫ୍ୟାବରଙ୍କ ପରୀକ୍ଷା ଢ଼ାଞ୍ଚାରେ ଅଗଷ୍ଟଫୋର୍ଡ଼ ନାମକ ଜଣେ ସୁଇସ୍ କୀଟତତ୍ତ୍ୱବିତ୍ ଗୋଟିଏ କାଗଜ ଉପରେ ସ୍ତ୍ରୀ ମଥକୁ କିଛି ସମୟ ରଖିଲେ ପରେ ସେଇ କାଗଜଟିକୁ ଝରକା ବାହାରେ ଟାଙ୍ଗି ଦେଲେ । ଫୋର୍ଡ଼ ଲକ୍ଷ୍ୟକଲେ କାଗଜ ଚାରିପଟେ ପୁରୁଷ ମଥମାନେ ଆସି ଭିଡ଼ କରୁଛନ୍ତି । ଫୋର୍ଡ ନିଶ୍ଚିତ ହେଲେ ଶରୀରର ସୁବାଷ ହିଁ ପୁରୁଷକୁ ସ୍ତ୍ରୀ ପାଖକୁ ଟାଣି ଆଣୁଛି ।

କେବଳ ମଥ ନୁହେଁ ଅନେକ ପ୍ରାଣୀଙ୍କଠି ଶରୀରର ସୁବାଷ ଦ୍ୱାରା ପ୍ରିୟତମକୁ ଆକର୍ଷଣ କରିବାର କ୍ଷମତା ଲକ୍ଷ୍ୟ କରାଯାଏ ।'କସ୍ତୁରୀ ମୃଗ' କଥା ଆମେ ଜାଣିଛୁ । ଏଇଭଳି ସୁବାଷ ସାହାଯ୍ୟରେ କେତେକ ମୂଷା, ଷଣ୍ଢ, ଘଡ଼ିଆଳ କୁମ୍ଭୀର, କେତେକ କଇଁଚ ଆଦି ପ୍ରାଣୀ ପ୍ରିୟତମକୁ ମିଳନ ପାଇଁ ଆକର୍ଷଣ କରିଥାନ୍ତି । କାମପୀଡ଼ିତ ମଣିଷ ଦେହରୁ ଏଇଭଳି ସୁବାଷ ବାହାରେ । ଏ ପ୍ରସଙ୍ଗରେ ବାତ୍ସାୟନଙ୍କ କାମସୂତ୍ରରେ ବିଶଦ ଆଲୋଚନା ରହିଛି ।କୀଟପତଙ୍ଗ ଜଗତରେ କେବଳ ମଥ ନୁହନ୍ତି, ମଶା, ଗୋବର ପୋକ ଜାତୀୟ ବିଭିନ୍ନ ବିଟଲ ସୁବାଷ ସାହାଯ୍ୟରେ ମିଳନର ଇଚ୍ଛା ପ୍ରିୟତମକୁ ଜଣାଇ ଦିଅନ୍ତି ।

ପ୍ରେମର ମହକ ଛଡ଼ା ଅନ୍ୟ ଏକ ଉପାୟରେ ପ୍ରିୟା ପ୍ରିୟତମକୁ ଆମନ୍ତ୍ରଣ ଜଣାଏ । ଏହା ହେଉଛି ପ୍ରେମର ଆଲୋକ ଯାହା ସାହାଯ୍ୟରେ ପ୍ରିୟା, ପ୍ରିୟତମର ସନ୍ଧାନ ପାଇଥାଏ ।

କେତେକ ପ୍ରଜାତି ସ୍ତ୍ରୀ ଜ୍ଜୁକୁଜୁଳିଆ ପୋକର ଡେଣା ନଥାଏ । ଫଳରେ ପୋକଗୁଡ଼ିକ ଉଡ଼ି ପାରନ୍ତି ନାହିଁ । ସ୍ତ୍ରୀ ପୋକଗୁଡ଼ିକର ପେଟତଳେ ଆଲୋକ ବିକାଶୀ ବଳାଟିଏ ଥାଏ । ଦିନବେଳେ ସ୍ତ୍ରୀ ପୋକଗୁଡ଼ିକ ଘାସ ମୂଳରେ ଛପି ରହନ୍ତି । ରାତି ହେଲେ ପୁରୁଷ ଯେବେ ଡେଣା ମେଲି ଉଡ଼ିବାକୁ ଆରମ୍ଭ କରେ ସେତେବେଳେ ସ୍ତ୍ରୀ ଚିତ ହୋଇ ଶୋଇ ପେଟଟିକୁ ଉପରକୁ କରିଦିଏ । ଏହି ସମୟରେ ଆଲୋକ ବିକାଶୀ ବଳାରୁ ହିମଶୀତଳ ଶାଗୁଆ ଆଲୋକ ବାହାରେ । ଆଲୋକର ଦିପ୍ତିରେ ଆକୃଷ୍ଟ ହୋଇ ପୁରୁଷ ସ୍ତ୍ରୀ ପାଖରେ ପହଞ୍ଚେ ଓ ମିଳିତ ହୁଏ । ଆମେରିକାରେ ମିଳୁଥିବା ଗୋଟିଏ ଜାତିର ଜ୍ଜୁକୁଜୁଳିଆ ପୋକରୁ ନିର୍ଦ୍ଦିଷ୍ଟ ବ୍ୟବଧାନରେ ଆଲୋକ ବିଚ୍ଛୁରିତ ହୋଇଥାଏ । ପରୀକ୍ଷାଗାରରେ ଦେଖାଯାଇଛି ଆଲୋକର ବିଚ୍ଛୁରଣ ଏକ ନିର୍ଦ୍ଦିଷ୍ଟ ଛନ୍ଦରେ ହେଲେ ଯାଇ ପୁରୁଷ ମିଳନ ପାଇଁ ଆଗଭର ହୁଏ 'ପ୍ରେମର ବତୀ' ଜଳେଇବାରେ କ୍ଲିକ ବିଟଲ (Click Beetle)ର ସମତୁଲ୍ୟ ଆଉ କେହି ନାହାନ୍ତି । ପଶ୍ଚିମ ଭାରତୀୟ ଦ୍ୱୀପପୁଞ୍ଜରେ ମିଳୁଥିବା କ୍ଲିକବିଟଲର ସ୍ଥାନୀୟ ନାଁ କୁକୁଓ (Cucuyo) । ବିଶେଷ ନୃତ୍ୟବେଳେ ସ୍ଥାନୀୟ ଯୁବତୀମାନେ କୁକୁଓକୁ କବରୀରେ ଲଗେଇ ପ୍ରସାଧାନ କରିଥାନ୍ତି ।

ଅନ୍ଧାର ରାତି, ଚାରିଆଡ଼େ ଶୁନଶାନ୍, ପବନର ସାଁ ସାଁ ଶବ୍ଦ, ନିଶାଚର ପକ୍ଷୀମାନଙ୍କ ଡ଼େଣା ଫଡ଼ ଫଡ଼ ସାଙ୍ଗକୁ ଝିଙ୍କାରିର ଝିଂ ଝିଂ ଡାକ ପରିବେଶକୁ ଆହୁରି ଗଭୀର୍ କରାଏ । ଅଶରୀରୀମାନେ ଆସନ୍ତି- ପାଟି ଖନିବାକେ, ଦେହ ଶୀତେଇ ଉଠେ, ଝିଂକାରିର ଏହି ଝିଂ ଝିଂ ଶବ୍ଦ ତା'ର ପୂର୍ବରାଗର ସଙ୍ଗୀତ । ଝିଙ୍କାରିର ଏହି ଶବ୍ଦ ସୃଷ୍ଟି ଏକ ଅଭିନବ ପ୍ରକ୍ରିୟା ଯାହା ଅନ୍ୟ କୌଣସି କୀଟପତଙ୍ଗରେ ଦେଖାଯାଏ ନାହିଁ । ଶବ୍ଦ ସୃଷ୍ଟି ପାଇଁ ଝିଙ୍କାରିର ପେଟ ତଳେ ରହିଛି ଚାରୋଟି ଗର୍ତ୍ତ । ଗର୍ତ୍ତ ଉପରେ ରହିଛି ଏକ ପତଳା ପର୍ଦ୍ଦା । ପର୍ଦ୍ଦା ଚାରିପଟେ କାନ ପରି ଖଣ୍ଡେ ମୋଟା ଚମଡ଼ାଯୁକ୍ତ ମାଂସପେଶୀ । ଗର୍ତ୍ତ ଚାରିପଟେ ଥିବା ମାଂସପେଶୀ ଯେତେବେଳେ ସଙ୍କୁଚିତ ଓ ପ୍ରସାରିତ ହୁଏ ସେତେବେଳେ ଗର୍ତ୍ତରେ ଥିବା ପବନ ପତଳା ପର୍ଦ୍ଦାଟିରେ କମ୍ପନ ସୃଷ୍ଟି କରାଏ । ପରେ ଏହି କମ୍ପନ ସମ୍ପ୍ରସାରିତ ହୋଇ ଝିଂ ଝିଂ ଶବ୍ଦ ସୃଷ୍ଟିକରେ । ଅଧିକାଂଶ ପ୍ରଜାତି ଝିଂକାରିର ଉଭୟ ସ୍ତ୍ରୀ ଓ ପୁରୁଷ ଝିଂ ଝିଂ ଶବ୍ଦ କରିଥାନ୍ତି । ତେବେ କେତେକ ପ୍ରଜାତିର ସ୍ତ୍ରୀ ଏହି ଶବ୍ଦ କରିପାରନ୍ତି ନାହିଁ । ସେଇ ପୁରୁଷମାନଙ୍କୁ ଲକ୍ଷ୍ୟ କରି ଗ୍ରୀକ୍ କବି Xenarchus ପରିହାସ ଛଳରେ କହିଛନ୍ତି "Fortunate are the cicadas for they have dumb wives" ଭାଗ୍ୟବାନକୁ ହିଁ ମିଳେ ବୋବା ସ୍ତ୍ରୀ ।

ପୂର୍ବରାଗ ବ୍ୟବହାର, ମିଳନ ସଙ୍ଗୀତ, ମିଳନ ଲାଗି ଆମନ୍ତ୍ରଣର ରୀତି ଇତ୍ୟାଦି ପାଇଁ ପ୍ରତ୍ୟେକ ପତଙ୍ଗର ଏକ ନିଜସ୍ୱ ଘରାନା ରହିଛି । ଏହି ସ୍ୱାତନ୍ତ୍ରତା ଯୋଗୁଁ କୀଟପତଙ୍ଗ ଜଗତରେ ନିଜ ବଂଶର କୌଳିଣ୍ୟ ଅକ୍ଷୁର୍ଣ୍ଣ ରହୁଛି । ଦୀପାବଳି ବେଳେ ଆଲୁଅ ଚାରିପଟେ ଦେଖାଯାଉଥିବା ଶାଗୁଆ ରଙ୍ଗର ଛୋଟ ଛୋଟ ଦିଆଲି ପୋକର ପୂର୍ବରାଗ ସଙ୍ଗୀତ ଶୁଣିବାର ସୌଭାଗ୍ୟ ଥରେ ମୋର ହୋଇଥିଲା । ମୁଁ ସେତେବେଳେ ଦିଲ୍ଲୀ ବିଶ୍ୱବିଦ୍ୟାଳୟ ପ୍ରାଣୀବିଜ୍ଞାନ ବିଭାଗରେ ଗବେଷଣା କରୁଥାଏ । ସେଦିନ କ'ଣ ଗୋଟାଏ ପରୀକ୍ଷା ପାଇଁ ମୋତେ ରାତିରେ ଲ୍ୟାବରେଟୋରୀରେ ରହିବାକୁ ହୁଏ । ବାହାରେ ଶେଷ ନଭେମ୍ବରର ଥଣ୍ଡା । ପାହାନ୍ତିଆରୁ ଆଖି

ମୁଦି ହୋଇ ଆସୁଥାଏ । ଏହି ସମୟରେ ପ୍ରଫେସର କେ.ଏନ୍. ସାକ୍ସେନା ଲ୍ୟାବରେଟୋରୀରେ ଦିଆଲି ପୋକର ବ୍ୟବହାର ଓ ମିଳନ ସଙ୍ଗୀତ ଉପରେ ଗବେଷଣା କରୁଥିବା ବନ୍ଧୁ ତରୁନ୍ ଆସି କହିଲା, ଦିଆଲି ପୋକର ଗୀତ ଶୁଣିବା ପରା ଶୀଘ୍ର ଆମ ଲ୍ୟାବକୁ ଆସ । ତାଙ୍କ ଲ୍ୟାବରେଟୋରୀରେ ପହଞ୍ଚିବା ପରେ ତରୁନ୍ ମୋତେ ଗୋଟିଏ ହେଡ୍‌ଫୋନ ପିନ୍ଧିବାକୁ ଦେଲା । ହେଡ୍‌ଫୋନଟି ଗୋଟିଏ ଆମ୍ପ୍ଲିପାୟାର ସହ ଲାଗିଛି । ଆମ୍ପ୍ଲିପାୟାରରୁ ଲମ୍ବିଛି ମାଇକ୍ରୋଫୋନ କର୍ଡ୍ । ଗୋଟିଏ ଦିଆସିଲି ବାକ୍ସ ପରି ପ୍ଲାଷ୍ଟିକ ପଞ୍ଜୁରି ସହିତ ଛୋଟ ବୋତାମ ପରି ମାଇକ୍ରୋଫୋନଟିଏ ଲାଗିଛି । ଆମେ ଦୁହେଁ ଦୁଇଟି ହେଡ୍‌ଫୋନ ପିନ୍ଧି ସାରିବା ପରେ ତରୁନ୍ ମୋତେ ପଞ୍ଜୁରିଟିକୁ ଲକ୍ଷ୍ୟ କରିବାକୁ କହିଲା । ଦେଖିଲି ପଞ୍ଜୁରି ଭିତରେ ଦୁଇଟି ଶାଗୁଆ ରଙ୍ଗର ଦିଆଲି ପୋକ । ସେମାନଙ୍କ ଭିତରୁ କିଏ ସ୍ତ୍ରୀ କିଏ ପୁରୁଷ ତରୁନ୍ ମୋତେ ଇଶାରାରେ କହିଦେଲା । କିନ୍ତୁ ସମୟ ଅପେକ୍ଷା କଲା ପରେ ଦେଖିଲି ପୁରୁଷଟି ଆଗ ଦୁଇ ଗୋଡ଼ ଉପରେ ଚାପ ଦେଇ ନିଜ ପଶ୍ଚାତଦେଶକୁ ସାମାନ୍ୟ ଉପରକୁ ଉଠେଇ ଦୋହଲଉଛି । ଦୋହଲେଇବା ସାଙ୍ଗକୁ ହେଡ୍‌ଫୋନରେ ଶୁଣିଲି ବର୍ଷା ଦିନର ବେଙ୍ଗରାବ ପରି 'କ୍ରାକ୍' 'କ୍ରାକ୍' ଶବ୍ଦ । ଶବ୍ଦ ପ୍ରଥମେ ଗୋଟି ଗୋଟି ହୋଇ ପରେ ଏକାଦିକ୍ରମେ କ୍ରାକ୍ କ୍ରାକ୍ ହେବାକୁ ଲାଗିଲା । ପୁରୁଷର ନୃତ୍ୟ ସାଙ୍ଗକୁ ସ୍ତ୍ରୀ ମଧ୍ୟ ସେଇ ଭଙ୍ଗୀରେ ନାଚିବାକୁ ଲାଗିଲା । ମନେ ହେଉଥାଏ ସତେ ଏଇ ପ୍ରଣୟୀଯୁଗଳ ସାମ୍ବା ନାଚ ନାଚୁଛନ୍ତି ଢୋଲ ବାଦ୍ୟର ତାଳେ ତାଳେ । କିଛି ସମୟ ନୃତ୍ୟ କଲା ପରେ ପୋକ ଦୁଇଟି ପରସ୍ପର ନିକଟକୁ ଆସି ଆଲିଙ୍ଗନ ବଦ୍ଧ ହେଲେ ।

ପ୍ରଜାପତି ପୁରୁଷ ମତ୍ତ ହେଲେ ସ୍ତ୍ରୀ ସନ୍ଧାନରେ ବାହାରି ପଡ଼େ ଏହି ସମୟରେ ବାଟରେ ଯେତେ ପ୍ରଜାପତି ଦେଖାଯାଏ ସମସ୍ତଙ୍କୁ ନିରିଖି ଦେଖେ । ସ୍ୱଜାତି ସ୍ତ୍ରୀର ସନ୍ଧାନ ପାଇଲେ ସେ ତା' ଚାରିପଟେ ଚକ୍ରାକାରରେ ବୁଲି ମନର ବାସନା ଜଣାଏ । ସ୍ତ୍ରୀର ସମ୍ମତି ପାଇଲେ ସେ ଡେଣା ମେଲି ତା' ପାଖରେ ବସିଯାଏ । ଏହି ସମୟରେ ସ୍ତ୍ରୀ ଶରୀରରୁ ନିର୍ଗତ ଏକ ସୁବାସ ପୁରୁଷର ଉତ୍ତେଜନାକୁ ଆହୁରି ତୀବ୍ର କରାଏ । ପୁରୁଷ ଉତ୍ତେଜିତ ହେଲାରୁ ସ୍ତ୍ରୀ ଚାରିପଟେ ଉଡ଼ିବୁଲେ ଓ ବାରମ୍ବାର ସ୍ତ୍ରୀ ମୁଣ୍ଡ ଉପରେ ଥିବା ନିର୍ଦ୍ଦିଷ୍ଟ ଏକ ବିନ୍ଦୁକୁ ନିଜର ଆଣ୍ଟିନା(antenna) ବା ଶୁଣ୍ଢ ସାହାଯ୍ୟରେ ଚୁମ୍ବନ କରେ । ସ୍ପର୍ଶପାଇ ସ୍ତ୍ରୀ ଉତ୍ତେଜିତ ହୁଏ । ପରିଶେଷରେ ଉଭୟ ଆଲିଙ୍ଗନ ବଦ୍ଧ ହୋଇ ମିଳିତ ହୁଅନ୍ତି ।

# ମିଳନ ପରେ ମରଣ

କଙ୍କଡ଼ା ବିଛାଟିଏ ଦେଖିଲେ ଆମ ମନରେ ପ୍ରଥମେ ଯେଉଁ ଭାବ ହୁଏ ତାହା ହେଉଛି ଭୟ । ଦେଖିବାକୁ ଯେତେ କଦାକାର ଓ ବିକଟ ହେଉ ନା କାହିଁକି କଙ୍କଡ଼ା ବିଛା ତା ନିଜସ୍ୱ ଜଗତରେ ଭୀଷଣ ସ୍ନେହୀ ଓ ସନ୍ତାନ ବତ୍ସଳ ଜୀବଟାଏ । ପିତାର ସ୍ନେହ କଙ୍କଡ଼ା ବିଛାକୁ କେବେ ହେଲେ ମିଳେ ନାହିଁ, କାରଣ ବିବାହ ପରେ ପରେ ମଧୁଯାମିନୀ ଶେଷ ହେଉ ନ ହେଉଣୁ ହତଭାଗ୍ୟ ପୁରୁଷଟି ନିଜ ସ୍ତ୍ରୀ ଦ୍ୱାରା ଅତି ନୃଶଂସ ଭାବେ ନିହତ ହୁଏ । ବିଛା ମା' ଉଭୟ ପିତା ଓ ମାତାର ସ୍ନେହ ଦେଇ ତା'ର ସନ୍ତାନମାନଙ୍କୁ ଲାଳନ କରିଥାଏ ।

ସୂର୍ଯ୍ୟ ପଶ୍ଚିମକୁ ଢ଼ଳିଲେ, ଗୋଧୂଳି ଲଗ୍ନରେ କଙ୍କଡ଼ା ବିଛାର ପ୍ରାକ୍ ମିଳନ କ୍ରିୟା ଆରମ୍ଭ ହୁଏ । ଏହି ସମୟରେ ଦୁଇଟି ବିଛା ପରସ୍ପର ନିକଟକୁ ଆଗେଇ ଆସନ୍ତି ଓ ଆଗ ଗୋଡ଼ ନଖ ଦ୍ୱାରା ଏକ ଅନ୍ୟକୁ ମୃଦୁ ଦଂଶନ କରନ୍ତି, ପରେ ପରେ ବିଛା ଦୁଇଟି ମୁଣ୍ଡକୁ ମୁଣ୍ଡ ଲଗେଇ ଧୀରେ ଧୀରେ ଭୂମି ଉପରକୁ ଠିଆ ହେବା ଭଙ୍ଗୀରେ ଉଠନ୍ତି । କିଛି ସମୟ ଉତ୍ତାରୁ ଲାଙ୍ଗୁଡ଼କୁ ମୁଣ୍ଡ ଉପରକୁ ଟେକି ଛନ୍ଦାଛନ୍ଦି ହୋଇ ରହନ୍ତି । ଏହିପରି ଖେଳ ବେଶ କିଛି ସମୟ ହେଲା ପରେ ଉଭୟ ନିବିଡ଼ ଆଲିଙ୍ଗନରେ ଆବଦ୍ଧ ହୋଇଯାଆନ୍ତି । ଏହି ଆଲିଙ୍ଗନକୁ ଲକ୍ଷ୍ୟ କଲେ ମନେ ହେବ ସତେ



କଙ୍କଡ଼ା ବିଛାର ପୂର୍ବରାଗ ନୃତ୍ୟ

ଅବା ସେମାନେ ଅନନ୍ତ ସୋହାଗ ବନ୍ଧନରେ ଆଜୀବନ ଆବଦ୍ଧ । ଆଲିଙ୍ଗନ ପରେ ଦୁଇଟି ଯାକ ବିଛା ହାତ ଧରାଧରି ହୋଇ କିଛି ବାଟ ପାଥାଚରି କରନ୍ତି । କଙ୍କଡ଼ା ବିଛାର ଏହି ପାଥାଚାରିକୁ ଲକ୍ଷ୍ୟ କରି ଜ୍ୟାଁ ହେନେରୀ ଫ୍ୟାବର ଲେଖିଥିଲେ "What are they saying to each other ? How shall we translate these silent epithalamium into words." (ସେମାନେ ପରସ୍ପରକୁ କ'ଣ କହୁଛନ୍ତି ? ନିରବ ଭାଷାର ମୁଁ କି ରୂପ ଦେବି) । ପାଥାଚାରି ପରେ ବିଛା ଦୁଇଟି ବାସରଘରକୁ ଆଗେଇ ଯାଆନ୍ତି । ବାସର ଶଯ୍ୟାରେ ମିଳନ ହୁଏ । ମିଳନ ପରେ ପରେ ସ୍ତ୍ରୀ ବିଛାଟି ଅତର୍କିତ ଭାବେ ପୁରୁଷଟିକୁ ଆକ୍ରମଣ କରେ । ପୁରୁଷ ନିଜକୁ ରକ୍ଷା କରିବା ପୂର୍ବରୁ ସ୍ତ୍ରୀ ତାକୁ ଦୁଇଗଡ଼ କରିଦିଏ । ପରଦିନ ସକାଳେ ପୁରୁଷଟିର ଶରୀର ଖଣ୍ଡ ଖଣ୍ଡ ହୋଇ ସ୍ତ୍ରୀ ନିକଟରେ ପଡ଼ିଥାଏ । ଦିନତମାମ ସ୍ତ୍ରୀ ପୁରୁଷର ଶରୀରକୁ ସ୍ପର୍ଶ କରେ ନାହିଁ । ସନ୍ଧ୍ୟା ହେଲେ ସ୍ତ୍ରୀ, ପୁରୁଷର ଶରୀରକୁ ଖଣ୍ଡେ ବାଟ ଘୋଷାରୀ ନେଇ ଶରୀରଟିକୁ ଆହାର କରେ । ସ୍ତ୍ରୀ କଙ୍କଡ଼ା ବିଛାର ଏହି ଅଭିନବ ଶବ ସତ୍କାରର କୌଣସି ମନୋବୈଜ୍ଞାନିକ କାରଣ ଅଛି କି ? ବେଳେ ବେଳେ ପୁରୁଷ ସ୍ତ୍ରୀର ଇଚ୍ଛା ଆଗରୁ ବୁଝିପାରେ ଓ ସ୍ତ୍ରୀ ଆକ୍ରମଣ କରିବା ପୂର୍ବରୁ ବାସ ଉପରୁ ପଳେଇ ଆସି ପ୍ରାଣ ରକ୍ଷା କରେ ।

ମନରେ ପ୍ରଶ୍ନ ହୁଏ ସ୍ତ୍ରୀ ବିଛାଟି କାହିଁକି ଏପରି ବ୍ୟବହାର କରେ ? ଏହାର ଉତ୍ତର ବିଭିନ୍ନ ବୈଜ୍ଞାନିକ ବିଭିନ୍ନ ମତବ୍ୟକ୍ତ କରନ୍ତି । ଅନେକ ମନେ କରନ୍ତି ଅଣ୍ଡା ଉତ୍ପାଦନ ପାଇଁ ସ୍ତ୍ରୀର ଅଧିକ ପ୍ରୋଟିନ ଆବଶ୍ୟକ, ତେଣୁ ସ୍ତ୍ରୀ ସହଜଲଭ୍ୟ ମରୁ ପୁରୁଷଟିକୁ ଆହାର କରି ତା'ର ପ୍ରୋଟିନ ଅଭାବ ଦୂର କରିଥାଏ । ଅନ୍ୟ କେତେକ ମଣନ୍ତି ଯେଉଁଠି ସ୍ତ୍ରୀ ସନ୍ତାନ ଉତ୍ପାଦନ ଓ ତା'ର ରକ୍ଷଣାବେକ୍ଷଣ ଏକାକୀ କରିପାରୁଛି ସେଠାରେ ପୁରୁଷର ଉପସ୍ଥିତି ନିରର୍ଥକ ତା'ଛଡ଼ା ସ୍ତ୍ରୀ ଶାସିତ ସମାଜରେ ପୁରୁଷ କେବଳ ଶୁକ୍ରାଣୁ ଉତ୍ପାଦକ ଯନ୍ତ୍ର ଛଡ଼ା ଆଉ କ'ଣ ? ତେଣୁ ଶୁକ୍ରାଣୁ ଦାନ କରି ସାରିବା ପରେ ପୁରୁଷର ବଞ୍ଚିବା ବା ମରିବାରେ ପ୍ରକୃତିର କିଛି ଯାଏ ଆସେ ନାହିଁ ।

ସନ୍ଧିପଦ (Arthropoda) ଜଗତରେ ସ୍ତ୍ରୀ କଙ୍କଡ଼ା ବିଛାର ଏହି ଅଦ୍ଭୁତ ଆଚରଣ ଏକମାତ୍ର ବ୍ୟତିକ୍ରମ ନୁହେଁ । ଆହୁରି ଅନେକ ସନ୍ଧିପଦ କଙ୍କଡ଼ା ବିଛାର ଅନୁଗାମୀ ।

ଗୋଟିଏ ପ୍ରଜାତି ବୁଢ଼ିଆଣୀର ନାଁ ମଣିଷ ଦେଇଛି ''ବ୍ଲ୍ୟାକଉଇଡ଼ୋ'' (Blackwidow spider) ଏହି ବୁଢ଼ୀଆଣୀ ସ୍ତ୍ରୀ ନିଜ ପ୍ରେମିକର ମୁଣ୍ଡ ଚୋବେଇବାକୁ ଭଲପାଏ । ମୁଣ୍ଡ ଚର୍ବଣ କାର୍ଯ୍ୟଟି ସ୍ତ୍ରୀ ମିଳନ ପରେ ପରେ କରିଥାଏ । ବୁଢ଼ିଆଣୀ ମାଂସାହାରୀ, ସେମାନଙ୍କ ଭିତରେ ସ୍ୱଜନ ଖାଦକତା ବା କ୍ୟାନିବାଲିଜମ ପ୍ରବୃତ୍ତି ରହିଛି । ଲିଙ୍ଗ ନିର୍ବିଶେଷରେ ଛୁଆ ବୁଢ଼ିଆଣୀକୁ ବଡ଼ ବୁଢ଼ିଆଣୀ ଖାଇଯିବା ବା ଗୋଟିଏ ପ୍ରଜାତିର ବୁଢ଼ିଆଣୀକୁ ଅନ୍ୟ ପ୍ରଜାତିର ବୁଢ଼ିଆଣୀର ଆକ୍ରମଣ ଓ ହତ୍ୟା ବୁଢ଼ିଆଣୀ ସମାଜରେ ନୂଆ କଥା ନୁହେଁ । ତେବେ ବୁଢ଼ିଆଣୀର ପ୍ରାକ୍‌ମିଳନ ଏବଂ ମିଳନୋତ୍ତର ବ୍ୟବହାରକୁ ଲକ୍ଷ୍ୟ କରି ଗୋଟିଏ କଥା କହିହେବ ବୁଢ଼ିଆଣୀ ସରଳ ମିଳନ ପଛାରେ ବିଶ୍ୱାସୀ ନୁହେଁ । ପୁରୁଷ ବୁଢ଼ିଆଣୀ, ସ୍ତ୍ରୀ ସନ୍ଧାନ କରିବା ପୂର୍ବରୁ ଲାଳ ସାହାଯ୍ୟରେ ଗୋଟିଏ ଛୋଟ ଚାଦର ବୁଣେ, ତା'ପରେ ସେଇ ଚାଦରରେ ନିଜ ଶୁକ୍ରାଣୁ ଜମା କରେ ।



ସ୍ତ୍ରୀ ବୁଢ଼ୀଆଣୀ ପେଟତଳେ ପୁରୁଷର ଆତ୍ମଗୋପନ

ବୁଢ଼ିଆଣୀର ଚାରିଯୋଡ଼ା ଗୋଡ଼ ସାଙ୍ଗକୁ ମୁଣ୍ଡ ପାଖକୁ ଥାଏ ଗୋଡ଼ ପରି ପେଡ଼ିପାଲ୍ପ । ଏହି ପେଡ଼ିପାଲ୍ପର କାର୍ଯ୍ୟ ଅନେକଟା ହାତ ପରି । ଶୀକାର ଧରିବା ବସ୍ତୁ ପରଖିବା ଆଦି କାର୍ଯ୍ୟ ପେଡ଼ିପାଲ୍ପ କରିଥାଏ । ସ୍ତ୍ରୀ ବୁଢ଼ିଆଣୀର ପେଡ଼ିପାଲ୍ପ ବୈଶିଷ୍ଟ ହୀନ, ହେଲେ ପୁରୁଷ ପେଡ଼ିପାଲ୍ପର ଗଠନରୁ ଏହା ସହଜରେ ଅନୁମେୟ ଯେ ଏହାର ନିର୍ଦ୍ଦିଷ୍ଟ କିଛି ଭୂମିକା ରହିଛି । ପୁରୁଷର ପେଡ଼ିପାଲ୍ପ ଗୋଟିଏ ଡ୍ରପର ବା ସିରିଞ୍ଜି ପରି ଶୁକ୍ରାଣୁଗୁଡ଼ିକୁ ଘୋଷାଡ଼ି ନିଏ ପରେ ଏହା ଜନନାଙ୍ଗର କାର୍ଯ୍ୟ କରିଥାଏ ।

ପେଡ଼ିପାଲ୍ପରେ ଶୁକ୍ରାଣୁ ଭରିବା କାମ ସରିଗଲେ ପୁରୁଷ ସ୍ତ୍ରୀ ସନ୍ଧାନରେ ବାହାରେ । ସ୍ତ୍ରୀ ପାଖରେ ପହଞ୍ଚି ପୁରୁଷ ତା'ର ଉପସ୍ଥିତି ସ୍ତ୍ରୀକୁ ଜଣେଇ ଦିଏ । ସ୍ତ୍ରୀଟି ଯଦି ପୂର୍ବରୁ ମିଳିତ ହୋଇଛି ବା ତା'ର ମିଜାଜ କୌଣସି କାରଣରୁ ବିରୂପ ତେବେ ପୁରୁଷର ଉପସ୍ଥିତି ଅନୁଭବ କଲା ମାତ୍ରକେ ତା'ର ଆକ୍ରମଣାତ୍ମକ ମନୋଭାବ ପ୍ରକାଶ ପାଏ ଓ ସେ ପୁରୁଷ ଆଡ଼କୁ ଧାଇଁ ଆସେ । ଏହି ସମୟରେ ପୁରୁଷ ସାଧାରଣତଃ ସେଠାରୁ ପଳାଏ କାରଣ ପୁରୁଷ ଜାଣେ ସେ ସ୍ତ୍ରୀ ସହ ବଳରେ ପାରିବ ନାହିଁ । ଯଦି ସ୍ତ୍ରୀଟି ମିଳନ ପାଇଁ ପ୍ରସ୍ତୁତ ତେବେ ପୁରୁଷଟି ଧୀରେ ଧୀରେ ସ୍ତ୍ରୀ ପିଠିରେ ବା ପେଟତଳେ ନିଜକୁ ମିଶେଇ ପେଡ଼ିପାଲ୍ପଟି ସ୍ତ୍ରୀ ଜନନାଙ୍ଗରେ ସ୍ଥାପନ କରେ । ପ୍ରଜାତିର ଚରିତ୍ର ଅନୁଯାୟୀ ଏଇ କ୍ରିୟା ସମାଧାନ କରିବାରେ ପାଞ୍ଚ ଦଶ ମିନିଟ ବା କେବେ ଚାଳିଶ ପଚାଶ ମିନିଟ୍ ଲାଗିପାରେ । ଦେଖାଯାଇଛି ଏହି ସମୟରେ ସ୍ତ୍ରୀ ବୁଢ଼ିଆଣୀ ନିଜ ଶରୀରକୁ ବିଭିନ୍ନ କାଇଦାରେ ଟେକିଧରି ପୁରୁଷର ସହଯୋଗ କରୁଛି । ମିଳନ କାମ ସରିଗଲେ ପୁରୁଷ କ୍ଷିପ୍ରଗତିରେ ସେ ସ୍ଥାନ ତ୍ୟାଗ କରେ । ପୁରୁଷ ଯଦି କୌଣସି କାରଣରୁ ସେ ସ୍ଥାନ ତ୍ୟାଗ କରିବାରେ ବିଳମ୍ବ କରେ ତେବେ ସ୍ତ୍ରୀ ସଙ୍ଗେ ସଙ୍ଗେ ମୁଣ୍ଡ ତଳକୁ କରି ପେଟତଳୁ ପୁରୁଷଟିକୁ ଭିଡ଼ିଆଣି ତା' ମୁଣ୍ଡକୁ ଚୋବେଇ ଦିଏ ।



ପ୍ରେଇଂ ମ୍ୟାନଟିସର ପୂର୍ବରାଗ ନୃତ୍ୟ

ଡାହାଣୀ ଝିଣ୍ଟିକା (Preying Mantis) ତା'ର ଅନଳସମ କ୍ଷୁଧା ମେଣ୍ଟାଇବା ପାଇଁ ନିଜ ପ୍ରିୟତମକୁ ମାରିଦେବାକୁ ତିଳେ ମାତ୍ର ଦ୍ୱିଧା କରେ ନାହିଁ । ମିଳନ ପୂର୍ବରୁ ଦୁଇଟି ଝିଣ୍ଟିକା ଆଗ ଗୋଡ଼ ଦୁଇଟି ଟେକି ପ୍ରଥମେ ଅଭିବାଦନ କଲା ଭଙ୍ଗିରେ ଏକ ଅନ୍ୟକୁ ଦେଖନ୍ତି ଓ ପରେ ପରେ ଆଲିଙ୍ଗନ ବଦ୍ଧ ହୁଅନ୍ତି । ମିଳନ ପରେ ପରେ ସ୍ତ୍ରୀ ବ୍ୟବହାରରେ ପରିବର୍ତ୍ତନ ଦେଖାଯାଏ ସେ ଅସ୍ଥିର ହୁଏ ଏବଂ ପୁରୁଷ କିଛି ବୁଝିବା ପୂର୍ବରୁ ତାକୁ ମାରିଦିଏ । ଥରେ ଅଣ୍ଡା ଦେଇ ସାରିବା ପରେ ସ୍ତ୍ରୀ ପୁଣି ଗର୍ଭବତୀ ହେବା ପାଇଁ ନୂତନ ପୁରୁଷର ସନ୍ଧାନ କରେ, ପୁରୁଷକୁ ପାଇଲେ ସେ ତା'ର ମନୋବାସନା ଜଣେଇ ଦିଏ, ପୁରୁଷକୁ ବକ୍ଷରେ ବାନ୍ଧି କାର୍ଯ୍ୟସିଦ୍ଧି ପରେ ପରେ ପୁରୁଷକୁ ମାରିଦିଏ । ସବୁ ଜାଣି ଶୁଣି ପୁରୁଷ ସ୍ତ୍ରୀ ସହ ମିଳିତ ହୁଏ । ସ୍ତ୍ରୀର ପ୍ରବଳ ଆବେଗରେ ଛନ୍ଦିହୋଇ ଆଲିଙ୍ଗନବଦ୍ଧ ଅବସ୍ଥାରେ ହିଁ ସ୍ତ୍ରୀ ଦ୍ୱାରା ନିହତ ହୁଏ । ସ୍ତ୍ରୀ ପ୍ରଥମେ ପୁରୁଷର ମୁଣ୍ଡଟିକୁ କାଟି ଦିଏ । ପରେ ପରେ ତା'ର ବେକ ଓ ବକ୍ଷ କାଟିଲା ପରେ ହିଁ ତା'ର ଆଲିଙ୍ଗନକୁ ଶୀଥିଳ କରେ । ପ୍ରେମର ଶକ୍ତି ପାଖରେ ମୃତ୍ୟୁ ମଧ ହାର ମାନେ । ପୁରୁଷ ପ୍ରେଇଂମ୍ୟାନଟିସ୍ ଏହି ତଥ୍ୟକୁ ପାଳନ କରି କେତେ ସହଜରେ ମୃତ୍ୟୁ ବରଣ କରେ ।

ପୁରୁଷ ମହୁମାଛିର ଜୀବନାବସାନ ମିଳନ ପରେ ପରେ ହିଁ ହୋଇଥାଏ । ତେବେ ପୁରୁଷର ମୃତ୍ୟୁ ହୁଏ ତା'ର ସତୀର୍ଥମାନଙ୍କ ଦଂଶନରେ । ବିଶ୍ୱାସ କରି ହୁଏ ନାହିଁ ଯେଉଁ ମହୁମାଛି ବଞ୍ଚେ ଅନ୍ୟ ହିତ ପାଇଁ ସେଇ ମହୁମାଛି ଏତେ ନୃଶଂସ ହୁଏ କିପରି ?

ମହୁମାଛି ସମାଜରେ 'ଜଣ' ବୋଲି କିଛି ନାହିଁ । ସମସ୍ତେ 'ଗଣ'ର ଏକ ଅଙ୍ଗ ମାତ୍ର । ଗୋଟିଏ ବିରାଟ ଯନ୍ତ୍ରର ଯନ୍ତ୍ରାଂଶ ପରି ସମସ୍ତେ ଦଳ ପାଇଁ କାର୍ଯ୍ୟ କରନ୍ତି, ବଞ୍ଚନ୍ତି ଦଳ ପାଇଁ । ମହୁମାଛିର ସମାଜ ସ୍ତ୍ରୀ ଶାସିତ । ରାଣୀ ସମାଜର ମଧ୍ୟବିନ୍ଦୁ ଯାହା କାମ କେବଳ ଅଣ୍ଡା



ରାଣୀ ଓ ଶ୍ରମିକ ମହୁମାଛି

ଦେବା । ଗୋଟିଏ ରାଣୀ ମହୁମାଛି ପ୍ରତିଦିନ ପ୍ରାୟ ୧୦୦୦ ଅଣ୍ଡା ଦେଇଥାଏ । ଏହି କାମ ସେ ୫ରୁ ୧୦ ବର୍ଷଯାଏ କରିଥାଏ । ସମାଜର ଅନ୍ୟ ଦୁଇ ଗୋଷ୍ଠୀ ହେଲେ ପୁରୁଷ (Drone) ଯେଉଁମାନଙ୍କ କାମ କେବଳ ରାଣୀକୁ ସଙ୍ଗଦାନ ଓ ବିବାହ ଶୋଭାଯାତ୍ରାରେ ରାଣୀ ସହ ମିଳନ । ସମାଜରେ ଏମାନଙ୍କୁ "Sex Object" କହିଲେ ଅତ୍ୟୁକ୍ତି ହେବ ନାହିଁ । ଅନ୍ୟ ଗୋଷ୍ଠୀଟି ହେଲେ ଶ୍ରମିକ (Worker) । ଶ୍ରମିକ ଗୋଷ୍ଠୀ ହେଲେ ବନ୍ଧ୍ୟା ସ୍ତ୍ରୀ (Sterile Female) । ମହୁଫେଣାର ଯାବତୀୟ କାମ ଶ୍ରମିକମାନେ କରିଥାନ୍ତି । ଶ୍ରମିକମାନଙ୍କ କାମ ସେମାନଙ୍କ ବୟସ ଅନୁସାରେ ବଣ୍ଟା ହୁଏ । ଜନ୍ମ ପରେ ଜୀବନର ପ୍ରଥମ ସୋପାନରେ ଶ୍ରମିକ ଆଜ୍ଞାବାହୀ ଭୃତ୍ୟ ଭାବରେ ରାଣୀ ତଥା ଫେଣାର ଅନ୍ୟମାନଙ୍କ ବୋଇହାକ କରେ । ବୟସ ବଢ଼ିଲେ ଶ୍ରମିକ ଦେହର ଏକ ଗ୍ରନ୍ଥିର ମହମପରି ଏକ ପଦାର୍ଥ ବାହାରେ ଯାହା ସାହାଯ୍ୟରେ ସେମାନେ ମହୁଫେଣାର ମରାମତି ଆଦି କରନ୍ତି । ପରିଣତ ବୟସରେ ଶ୍ରମିକକୁ ଫେଣା ବାହାରକୁ ଯିବାର ଅନୁମତି ମିଳେ । ଏହି ସମୟରେ ସେ ପରାଗ ଓ ମହୁ ସଂଗ୍ରହ କରେ ।

ସମାଜର ସବୁକିଛି ରାଷ୍ଟ୍ରାୟତ ପରି ମହୁମାଛିର ଯୌନଜୀବନ ମଧ୍ୟ ରାଷ୍ଟ୍ରର ଅଧୀନ । ସମାଜରେ ପୁରୁଷ ସ୍ତ୍ରୀର ଯୌନ କ୍ରୀଡ଼ନକ ମାତ୍ର । ଜନ୍ମର ପ୍ରଥମ ବା ଦ୍ୱିତୀୟ ସପ୍ତାହରେ ରାଣୀ ମହୁମାଛିର ଦେହରୁ ଏକ ପ୍ରକାର ସୁବାସ କ୍ଷରଣ ହୋଇଥାଏ । ଏହାର ଇଂରାଜୀ ନାଁ ଫେରମୋନ (Phermone) । ସାମାଜିକ କୀଟପତଙ୍ଗମାନଙ୍କ ଚାଲିଚଳନ ବହୁଳଭାବରେ ଫେରମୋନ ଦ୍ୱାରା ନିୟନ୍ତ୍ରିତ । ରାଣୀ ମହୁମାଛି ଫେରମୋନ ଦ୍ୱାରା ପୁରୁଷକୁ ଉତ୍ତେଜିତ କରାଏ ଓ ଅନ୍ୟ ସ୍ତ୍ରୀକୁ ବନ୍ଧ୍ୟା କରାଏ ।

ଏକ ଉଜ୍ଜ୍ୱଳ ସକାଳରେ ରାଣୀ ଦେହରୁ ଫେରମୋନର ସୁବାସ ବାହାରେ । ଏହି ସୁବାସ ପାଇ ଫେଣାର ସମସ୍ତ ପୁରୁଷ ଉତ୍ତେଜିତ ହୁଅନ୍ତି ଓ ଫେଣାର କୋଟରରୁ ପଦାକୁ ବାହାରି ଆସନ୍ତି । ଏହାପରେ ଆରମ୍ଭ ହୁଏ ମିଳନ ଶୋଭାଯାତ୍ରା । ଶୋଭାଯାତ୍ରାର ମଧ୍ୟମଣି ରାଣୀ । ରାଣୀକୁ ବେଢ଼ିଥାଆନ୍ତି ପୁରୁଷ ଓ ଶ୍ରମିକ । ଫେଣାରୁ ବାହାରି ଶୋଭାଯାତ୍ରା କିଛି ବାଟ ଗଲା ପରେ ପ୍ରଥମ ମିଳନ ହୁଏ, ଯାହାର ସ୍ଥାୟିତ୍ୱ କେଇ ମିନିଟ୍ ମାତ୍ର । ମିଳନ ବେଳେ ପୁରୁଷ ତା'ର ଶୁକ୍ରାଣୁକୁ ରାଣୀର ଅଣ୍ଡାଶୟ ତଳକୁ ଥିବା ଏକ ଥଳିରେ ଭରିଦିଏ । ଶୋଭାଯାତ୍ରା ଚାଲିଥିବା ବେଳେ ପୁରୁଷ ପ୍ରାୟ ଦଶରୁ ବାରଥର ରାଣୀ ସହ ମିଳିତ ହୁଏ । ମିଳନ ସବୁବେଳେ ଯେ ଗୋଟିଏ ପରୁଷ ସହ ହେବ ତା'ର କୌଣସି ନିର୍ଦ୍ଦିଷ୍ଟ ନିୟମ ନାହିଁ । ମିଳିତ ହେବାର ସୁଯୋଗ ବହୁ ପୁରୁଷ ପାଇଥାନ୍ତି । ପ୍ରତ୍ୟେକ ପୁରୁଷ ନିଜ ଶୁକ୍ରାଣୁ ରାଣୀର ଥଳିରେ ଭରି ଦିଅନ୍ତି । ଅଣ୍ଡା ଦେଉଥିବା ଯାଏଁ ରାଣୀ ସଞ୍ଚିତ ଶୁକ୍ରାଣୁର ଉପଯୋଗ କରିଥାଏ ।

ଜୀବନର ସର୍ବଶ୍ରେଷ୍ଠ ଓ ବହୁ ଆକାଂକ୍ଷିତ ମିଳନ ପର୍ବଟି ଶେଷ ହେବା ପରେ ପରେ ପୁରୁଷର ଜୀବନାବସାନ ହୁଏ ରକ୍ତ ସ୍ନାନରେ । ଯେଉଁ ଶ୍ରମିକମାନେ କେତେ ନିଷ୍ଠାରେ ପୁରୁଷର ସେବା ଯତ୍ନ କରୁଥିଲେ ସେଇ ଶ୍ରମିକମାନେ ହୋଇଗଲେ ହତଭାଗ୍ୟ ପୁରୁଷର ଘାତକ । ମିଳନ ପରେ ପରେ ପ୍ରତ୍ୟେକ ପୁରୁଷକୁ ତିନିଚାରି ଜଣ ଶ୍ରମିକ ବେଢ଼ି ଯାଆନ୍ତି । ପ୍ରଥମେ ସେମାନେ ପୁରୁଷର ଡେଣା କାଟି ଦିଅନ୍ତି, ପରେ ପରେ ତା'ର ଗୋଡ଼ ହାତ । ମୃତ୍ୟୁ ନିଶ୍ଚିତ ଜାଣି ପୁରୁଷ ଆତ୍ମରକ୍ଷାର କୌଣସି ଚେଷ୍ଟା କରେ ନାହିଁ । ଯଦି କେବେ ଘାତକ କବଳରୁ ପୁରୁଷ ବଞ୍ଚିଯାଏ, ତେବେ ମଧ୍ୟ ମହୁଫେଣା ଭିତରକୁ ପ୍ରବେଶ କରିବାର ଅଧିକାର ସେ ପାଏ ନାହିଁ ।

ମଙ୍ଗଳମୟ ଈଶ୍ୱରଙ୍କ ଦରବାରରେ ଏ କି ଧରଣର ବ୍ୟବସ୍ଥା । ମିଳନ ପରେ ପୁରୁଷର ଏ ମୃତ୍ୟୁ ଆକାଂକ୍ଷା କାହିଁକି ? ସାଇନ୍ସ ପତ୍ରିକାର ପ୍ରକାଶିତ କର୍ଣ୍ଣେଲ ବିଶ୍ୱବିଦ୍ୟାଳୟର ଗବେଷିକା ମେଡ଼ିୟାନ ଆନଡ୍ରେଡ ଏ ପ୍ରସଙ୍ଗରେ ଏକ ନୂତନ ବାଖ୍ୟା ଦେଇଛନ୍ତି । ମେଡ଼ିୟାନ କହନ୍ତି ବୁଢ଼ିଆଣୀର ବ୍ୟବହାର ସମ୍ପୂର୍ଣ୍ଣ ବିବର୍ତ୍ତନ ଗତ । ତାଙ୍କ ମତରେ ଯୌନ କ୍ଷୁଧା ଯଦି ବଂଶବୃଦ୍ଧିର ପୂର୍ବ ସର୍ତ୍ତ ହୁଏ ତେବେ ପୁରୁଷ ବୁଢ଼ିଆଣୀର ଆତ୍ମାହୂତି ସେଇ ବଂଶବୃଦ୍ଧିର ସହାୟକ । ପୁରୁଷ ବୁଢ଼ିଆଣୀ ଆଗାମୀ ପ୍ରଜନ୍ମ ପାଇଁ ଯେବେ ନିଶ୍ଚିତ ହୋଇଯାଏ, ସେତେବେଳେ ନିଜକୁ ସ୍ତ୍ରୀର ଖାଦ୍ୟରେ ପରିଣତ କରି ପୁରୁଷ ସ୍ତ୍ରୀକୁ ଦୁଇ ଧରଣର ତୃପ୍ତି ଦିଏ- ଉଦର ପୂର୍ତ୍ତି ଓ ଯୌନ କ୍ଷୁଧା । ଆନଡ୍ରେଡ କହନ୍ତି ସ୍ତ୍ରୀ ଓ ପୁରୁଷ ବୁଢ଼ିଆଣୀର ଜୀବନଚକ୍ର ମଧ୍ୟ ସେମାନଙ୍କ ବିଚିତ୍ର ଆଚରଣର ଅନ୍ୟ ଏକ ବାଖ୍ୟା । ଯୌବନରେ ଅର୍ଥାତ୍ ଜନ୍ମ କରିବାର କ୍ଷମତାପ୍ରାପ୍ତ ପରେ ସ୍ତ୍ରୀ ବୁଢ଼ିଆଣୀ ଦୁଇବର୍ଷ ବଞ୍ଚିଲା ବେଳେ ପୁରୁଷ ବଞ୍ଚେ ଦୁଇ ଚାରି ମାସ । ତେଣୁ ସନ୍ତାନ ଉତ୍ପାଦନ କାମଟିରେ ସହାୟତା କଲାପରେ ପୁରୁଷ ପାଇଁ ଜୀବନ ଥିବା ବା ନ ଥିବା ସମାନ । ଜୀବନରେ ମିଳନର ସୁଯୋଗ ପୁରୁଷ ଥରେ ମାତ୍ର ପାଇଥାଏ । ତେଣୁ ବଂଶଧର ସୁନିଶ୍ଚିତ ହୋଇଗଲେ ସେ ଅଥବା ତା'ର ''ସ୍ୱାର୍ଥପର ଜିନ''(Selfish Gene) ଆଉ ପଛକୁ ଅନାଏ ନାହିଁ । ପ୍ରେଇଂ ମ୍ୟାନ୍‌ଟିସ, ବୁଢ଼ିଆଣୀ, କଙ୍କଡ଼ା ବିଛା, ମହୁମାଛି ପ୍ରତ୍ୟେକଙ୍କ ଜୀବନରେ ଏକା ନାଟକ ସବୁଠି ସେକ୍ସୁଆଲ କ୍ୟାନିବାଲିଜିମ ।

# ପ୍ରୀତି ଉପହାର

ପ୍ରୀତି ଉପହାରର ପ୍ରଚଳନ ମଣିଷ ସମାଜରେ କେବେଠୁ ଚାଲୁ ହେଲା ତାହାର ଠିକଣା କରିବା କଷ୍ଟ । ତେବେ ଏହି ପ୍ରଥାଟିର ପ୍ରଚଳନ ମଣିଷର ଯେଉଁ ଦୁଇଟି ଭାବରୁ ଆସିଛି ତାହା ନିଶ୍ଚୟ 'ସ୍ନେହ' ଓ 'ତୋଷାମଦ' । ମୋର ମନେହୁଏ ମଣିଷ ଯେବେ ତା'ର ଉପରୋକ୍ତ ଭାବକୁ କଥାରେ ପ୍ରକାଶ କରିବାକୁ ଅକ୍ଷମ ହୁଏ, ସେତେବେଳେ ସେ ଉପହାର ଜରିଆରେ ତା'ର ଭାବକୁ ଗ୍ରାହୀକୁ ଜଣେଇ ଦିଏ । ହେଲେ ଇତର ପ୍ରାଣୀ କୂଳରେ ଏହି ପ୍ରଥାଟିର ପ୍ରଚଳନ ପ୍ରିୟାର ମନ



ପୁରୁଷ ମାଛିର ଉପହାର



ସ୍ତ୍ରୀର ଉପହାର ଗ୍ରହଣ ଓ ମିଳନ

ତୋଷିବା ପାଇଁ ହୋଇଛି ।

କେତେକ ପୁରୁଷ ମାଛି ମିଳନ ପୂର୍ବରୁ ଦୁଇ ଗୋଡ଼ ସାହାଯ୍ୟରେ ଶୀକାର ଧରି ପ୍ରିୟା ପାଖରେ ନିବେଦନ କରନ୍ତି, ଆଉ କେତେକ ଗୋଟିଏ ଧାପ ଆଗେଇ ଉପହାର ଚାରିପଟେ ବିଶେଷ ଗ୍ରନ୍ଥିରୁ ସୂତା ବାହାର କରି ସେଥିରେ ଉପହାରକୁ ଗୁଡ଼ାଇ ସ୍ତ୍ରୀ ପାଖରେ ପହଞ୍ଚନ୍ତି । ସାଧାରଣତଃ ବୁଢ଼ିଆଣୀ ପୁରୁଷର ଅକାର ସ୍ତ୍ରୀ ଅପେକ୍ଷା ଯଥେଷ୍ଟ ଛୋଟ । ଅଧିକାଂଶ କ୍ଷେତ୍ରରେ ସ୍ତ୍ରୀ ବୁଢ଼ିଆଣୀ ମିଳନ ପରେ ପରେ ପୁରୁଷକୁ ନିର୍ମମ ଭାବରେ ହତ୍ୟା କରିଥାଏ । ସ୍ତ୍ରୀର ଏହି ଆକ୍ରୋଶରୁ ରକ୍ଷା ପାଇବା ଲାଗି, ପୁରୁଷ ବିଭିନ୍ନ ଉପାୟ ପାଞ୍ଚିଥାଏ । ପିସୁଆରା (Pisuara listeri) ନାମକ ବୁଢ଼ିଆଣୀ ପୁରୁଷ ଶୀକାର ଧରିବା ପରେ ନିର୍ଦ୍ଦିଷ୍ଟ ଗ୍ରନ୍ଥିରୁ ସୂତା ବାହାରକରି ତାହା ଚାରିପଟେ ଗୁଡ଼ାଇ ପ୍ୟାକେଟ ଟିଏ ବନାଏ, ପରେ ସେଇ ପ୍ୟାକେଟଟିକୁ ସେ ସ୍ତ୍ରୀକୁ ଭେଟି ଆକାରରେ ଦେଇଥାଏ । ସ୍ତ୍ରୀ ପ୍ରଥମ ଉପସ୍ଥାପନାରେ ଉପହାର ଗ୍ରହଣ କରେ ନାହିଁ । ଦେଖି ନ ଦେଖିଲା ପରି ବାହାନା କରେ ସତେ ଅବା କହିବାକୁ ଚାହେଁ, ''ଏ ସମସ୍ତ କି ଆବଶ୍ୟକ ଥିଲା-ତୁମେ ତ ଜାଣ...'' ହେଲେ ପୁରୁଷ ସହଜରେ ସେ ସ୍ଥାନ ଛାଡ଼େ ନାହିଁ । ତା'ରି ପାଖରେ ଏପଟ ସେପଟ ହୁଏ କୁହେ, ''ଦେଖ ଭଲ ନ ଲାଗିଲେ ନ ନେବ ।'' ପୁରୁଷର ଏହି ଅନୁନୟରେ ସ୍ତ୍ରୀ ବଡ଼ ଅନିଚ୍ଛାରେ ଉପହାର ଗ୍ରହଣ କରେ । ତା' ପରେ ସ୍ତ୍ରୀ ଉପହାର ପ୍ୟାକେଟ ଉପରୁ ସୂତା ଛଡ଼େଇବା ଅବସରରେ ସ୍ତ୍ରୀ ସହ ମିଳିତ ହୋଇ ସେଠାରୁ ଖସି ପଳେଇଯାଏ ।

ମିଳନ ପରେ ପେଟ ପୂରେଇ ଆହାର ଏବଂ ସେଥିପାଇଁ ପୂର୍ବରୁ ପ୍ରସ୍ତୁତି ଅନେକ ମାଛି ଜାତିର ଏକ ରୀତି । ପାଣିରେ ଉପରେ ରହୁଥିବା ଏକ ଧରଣର ଛୋଟ ମାଛି ବିଶେଷ ଲାଳ ଗ୍ରନ୍ଥି ସାହାଯ୍ୟରେ ଏକ ଛୋଟ ଓଢ଼ଣା ବୁଣନ୍ତି । ପରେ ଓଢ଼ଣାଟିକୁ ପଛ ଦୁଇ ଗୋଡ଼ରେ ବାନ୍ଧି ପାଣି ଉପରେ ଉଡ଼ନ୍ତି । ଓଢ଼ଣାରେ ପାଣି ବିନ୍ଦୁ ଲାଗିଯାଏ ପରେ ସେଥିରେ ସୂର୍ଯ୍ୟ କିରଣ ପଡ଼ିଲେ ତାହା ଚକ୍ ଚକ୍ ହୁଏ । ପୁରୁଷ ମାଛି ଏହି ପ୍ରକ୍ରିୟାରେ ସ୍ତ୍ରୀକୁ ଆକର୍ଷଣ କରିଥାଏ ।

ପତଙ୍ଗ କୁଳର ବିଶାଳ ବ୍ୟାପ୍ତି ପରି, ଏହି କୁଳରେ ଦେଖାଯାଉଥିବା ପୂର୍ବରାଗ ବ୍ୟବହାର ଅନ୍ୟ କୌଣସି ଇତର ପ୍ରାଣୀ କୁଳରେ ଦେଖାଯାଏ ନାହିଁ । କେତେବେଳେ ଏହି ବ୍ୟବହାର ଅତି ତୀବ୍ର ଓ ଦାନବୀୟ, ପୁଣି କେତେବେଳେ କୋମଳ ଓ ନମନୀୟ, କେତେବେଳେ ଏହା ଅତି ଏକାନ୍ତ ଓ ଗୋପନୀୟ, ପୁଣି କେତେବେଳେ ସର୍ବସାଧାରଣ ଏବଂ ଦଳୀୟ । ଦୁଇଟି ଝିଣ୍ଟିକା ଅଥବା ଦୁଇଟି ପଙ୍ଗପାଳ ପୁରୁଷ ଓ ସ୍ତ୍ରୀ ପରସ୍ପର ପ୍ରତି ଆକୃଷ୍ଟ ହେଲେ କିଛି ସମୟ ପରସ୍ପରକୁ ନିରିକ୍ଷଣ କରନ୍ତି । ପଙ୍ଗପାଳର ଆଖି ପତା ନାହିଁ ହେଲେ ସେମାନଙ୍କ ଚାହାଣୀ ଦେଖିଲେ ମନେ ହେବ ସତେ ଅବା ସେମାନେ ଅପଲକ ନୟନରେ ଏକ ଅନ୍ୟଦ୍ୱାରା ସମ୍ମୋହିତ । ସମ୍ମୋହିତ ଭାବ କଟିଲା ପରେ ଉଭୟ ପରସ୍ପରକୁ ଶୁଣ୍ଢ ସାହାଯ୍ୟରେ ସ୍ପର୍ଶ କରନ୍ତି । ଏହି ପ୍ରକ୍ରିୟା ପରେ ହିଁ ପୁରୁଷ ସ୍ତ୍ରୀ ପିଠିରେ ଅଧିଷ୍ଠିତ ହୁଏ ଏବଂ ସବଳ ଦୁଇ ବାହୁରେ ସ୍ତ୍ରୀକୁ ଜାବୁଡ଼ି ଧରେ ।

# ଏକ ବଲ୍ଲଭା ଉଈ ରାଣୀ

ଉନ୍ନତ କୀଟପତଙ୍ଗ ଓ ନିମ୍ନମାନର କୀଟପତଙ୍ଗମାନଙ୍କ ମଧ୍ୟରେ ଏକ ବଡ଼ ବିଭେଦ ରୂପାନ୍ତର (Metamorphosis) କ୍ରିୟାର ଫରକ । ଉଚ୍ଚତର କୀଟପତଙ୍ଗର ବୃଦ୍ଧି ସମ୍ପୂର୍ଣ୍ଣ ରୂପାନ୍ତର (Complete metamorphosis) ଭିତରେ ହେଉଥିବା ବେଳେ ନିମ୍ନରେ କୀଟପତଙ୍ଗରେ ଏହି ରୂପାନ୍ତର କ୍ରିୟାର ମାଧ୍ୟମ ଅସମ୍ପୂର୍ଣ୍ଣ । ଏହି ଅସମ୍ପୂର୍ଣ୍ଣ ରୂପାନ୍ତରକୁ ଇଂରାଜୀରେ (Epimorphosis) କୁହାଯାଏ । ଉନ୍ନତତର କୀଟପତଙ୍ଗ ନିଜ ଯୌବନ ସଁବାଳୁଆ ସଦୃଶ ଲାର୍ଭା ରୂପେ ବିତାଇବା ପରେ ପିଉପା, ତାହାପରେ ପିଉପା ଅବସ୍ଥାରେ କିଛି ଦିନ ବିଶ୍ରମା ନେଲା ପରେ ଯାଉ ସମ୍ପୂର୍ଣ୍ଣ ବୃଦ୍ଧିପ୍ରାପ୍ତ ହୋଇଥାଏ । ଅନ୍ୟ ପକ୍ଷରେ ନିମ୍ନମାନର କୀଟପତଙ୍ଗ ବୟଃପ୍ରାପ୍ତିର ସମସ୍ତ ଗୁଣ ନେଇ ଅଣ୍ଡାରୁ ବାହାରେ ଓ ଧୀରେ ଧୀରେ ଖୋଳପା ଛାଡ଼ି ପୂର୍ଣ୍ଣାଙ୍ଗପ୍ରାପ୍ତ ହୁଏ । ଏହି ପ୍ରକାର ଭେଦ ଅନୁସାରେ ଉଈ ନିମ୍ନମାନର କୀଟପତଙ୍ଗ ଶ୍ରେଣୀର ଅର୍ନ୍ତଭୁକ୍ତ ।

ନିମ୍ନ ବର୍ଗରେ ରହି ମଧ ଉଈର ସାଂମାଜିକ ଜୀବନ ଓ ସମାଜ ବ୍ୟବସ୍ଥା ଯେ କୌଣସି ଉଚ୍ଚବର୍ଗର ସମାଜିକ କୀଟ ଯଥା ମହୁମାଛି ଓ ପିମ୍ପୁଡ଼ିର ସମକକ୍ଷ । ଉଈର ଜୀବନ ଓ ସାମାଜିକ



ଉଈ ସଂସାର : ରାଣୀ, ଶ୍ରମିକ, ସୈନିକ ପୁରୁଷ

ବ୍ୟବସ୍ଥା ଉପରେ ଆଧାର କରି ଅନେକ ବହି ଲେଖା ହୋଇଛି । ସେମାନଙ୍କ ମଧ୍ୟରୁ, Maeterlinck's "Life of termites" ଏବଂ Maria's "The soul of the white ant" ବହି ଦୁଇଟି ବହୁ ଚର୍ଚ୍ଚିତ । ଦୁଇଟି ବହିର ଶେଷକଥା ‘‘ଯଦି କୌଣସି ଦିନ ମନୁଷ୍ୟ ନାମକ ପ୍ରାଣୀଟି ଏ ପୃଥିବୀରୁ ଅବଲୁପ୍ତ ହୁଏ ତେବେ ଏ ପୃଥିବୀ ମନୁଷ୍ୟର ଏକ ମାତ୍ର ଯୋଗ୍ୟ ଉତ୍ତରାଧୀକାରୀ ହେବାର କ୍ଷମତା କେବଳ ଉଈର ରହିଛି । ମହୁମାଛି, ପିମ୍ପୁଡ଼ି ଆଦି ସାମାଜିକ ପତଙ୍ଗ ଯଥେଷ୍ଟ ପରିଶ୍ରମୀ ଓ ସୁସଂହତ ତଥାପି ଉଈର ସାମାଜିକ ସଂହତି, ସମାଜ ବ୍ୟବସ୍ଥାର ପରିପୂର୍ଣ୍ଣତା ଏବଂ ସମାଜର ବିଭିନ୍ନ ଗୋଷ୍ଠୀର ଭାରସାମ୍ୟ ବଜାୟର ଅଭିନବ ପ୍ରକ୍ରିୟା ମହୁମାଛି ବା ପିମ୍ପୁଡ଼ିରେ ଦେଖାଯାଏ ନାହିଁ ।

ଉଈ ତା’ର ନୂତନ ସମାଜର ପ୍ରତିଷ୍ଠା କରେ ଯେତେବେଳେ ତା’ର ପର ଲାଗେ । ଏହି ସମୟରେ କ୍ଷେପ କ୍ଷେପରେ ସେମାନେ ଗାତରୁ ବାହାରି ଚାରିଆଡ଼କୁ ଖେଦି ଯାଆନ୍ତି । ମୁକ୍ତାଙ୍ଗନରେ ଉଈର ଉଡ୍ଡନ ଶୋଭାଯାତ୍ରା ମହୁମାଛିର ମିଳନ ଶୋଭାଯାତ୍ରା ପରି କେବଳ ରାଣୀ କୈନ୍ଦ୍ରିକ ନୁହେଁ । ଉଡ୍ଡନ ସମୟରେ ହିଁ ଉଈ ତା’ର ଜୀବନ ସଙ୍ଗିନୀ ବାଛିଥାଏ ।

ଜୀବନରେ ଥରେ ମାତ୍ର ଉଈର ପର ଲଗେ । ଏହି ସମୟର ଉଈ ଗାତ ଭିତରୁ ପଦାକୁ ଚାଲିଆସେ । ଗାତ ବାହାରେ ଶତ୍ରୁ କବଳରେ ପଡ଼ି ବହୁ ଉଈ ମରି ହଜି ଯାଆନ୍ତି । ଯେଉଁମାନେ ବଞ୍ଚନ୍ତି ସେମାନଙ୍କ ପର ଝଡ଼ିଯାଏ । ଏହି ସମୟରେ ସ୍ତ୍ରୀ ଓ ପୁରୁଷ ପରସ୍ପର ସହ ପରିଚିତ ହୁଅନ୍ତି । ମିଳନ ଇଚ୍ଛୁକ ସ୍ତ୍ରୀ ଓ ପୁରୁଷ କିଛିବାଟ ଏକାଠି ଚାଲବୁଲ କରନ୍ତି । ଏହି ଅବସ୍ଥାରେ ସେମାନେ ମିଳନକ୍ଷମ ହୁଅନ୍ତି । ମିଳନ ଇଚ୍ଛା ସ୍ତ୍ରୀ ଶରୀରରୁ ନିଃସୃତ ଫେରମୋନ ସାହାଯ୍ୟରେ ପୁରୁଷକୁ ଜଣେଇ ଦିଏ । ଉଈ ରାଣୀର ବିଶେଷତ୍ୱ ସେ ରାଣୀ ମହୁମାଛି ପରି ବହୁ ବଲ୍ଲଭା ନୁହେଁ ବରଂ ଏକ ପତି ସହଚର୍ଯ୍ୟରେ ସେ ତା’ର ଜୀବନ ବିତାଇ ଥାଏ ।

ମିଳନ ପରେ ଉଭୟ ସ୍ତ୍ରୀ ଓ ପୁରୁଷ ଏକାଠି ଏକ ନୂତନ ବସାର ସନ୍ଧାନ କରନ୍ତି । ବସା ବାନ୍ଧିବା କାମ ଉଭୟ ସ୍ତ୍ରୀ ଓ ପୁରୁଷ ସମାନ ଭାବରେ ବାଣ୍ଟି ନିଅନ୍ତି । ବସା ସାଧାରଣତଃ ବୃକ୍ଷ କୋଟର ବା ନବ ନିର୍ମିତ ଗାତମାନଙ୍କରେ ହୋଇଥାଏ । ବସାର ଏକ ନିର୍ଦ୍ଦିଷ୍ଟ କୋଠରୀରେ ସ୍ତ୍ରୀ ଅଣ୍ଡା ଦେଇଥାଏ । ଏହି ସମୟରେ ପୁରୁଷ ଅଣ୍ଡାର ରକ୍ଷଣାବେକ୍ଷଣ କରିଥାଏ । ଅଣ୍ଡା ଫୁଟି ସେଥିରୁ ଲାର୍ଭା ବାହାରେ । ଲାର୍ଭା ଅବସ୍ଥାରେ ହିଁ ସେମାନଙ୍କ ମଧ୍ୟରେ ଗୋଷ୍ଠୀ ବିଭାଜନ ହୁଏ । ଏଇ ଗୋଷ୍ଠୀଗୁଡ଼ିକ ଶ୍ରମିକ, ସୈନିକ ଏବଂ ଉତ୍ପାଦନ ରହିତ ସ୍ତ୍ରୀ ଓ ପୁରୁଷ । ସମାଜ ପ୍ରତିଷ୍ଠା କରିଥିବା ପ୍ରଥମ ପୁରୁଷ ଓ ସ୍ତ୍ରୀ ଯେତେବେଳେ ଅନୁଭବ କରନ୍ତି ସେମାନଙ୍କ ସମାଜରେ ଯଥେଷ୍ଟ ସଂଖ୍ୟାରେ ଶ୍ରମିକ ଓ ସୈନିକ ମହଜୁତ ଅଛନ୍ତି ଓ ସମାଜରେ ଶୃଙ୍ଖଳା ରହିଛି, ସେତେବେଳେ ସେମାନେ ସମାଜ ଗଠନ କାର୍ଯ୍ୟରୁ ଅବସର ନେଇ କେବଳ ଅଣ୍ଡା ଉତ୍ପାଦନ ଅର୍ଥାତ୍ ବଂଶବୃଦ୍ଧି କାର୍ଯ୍ୟରେ ନିଜକୁ ନିୟୋଜିତ କରନ୍ତି ।

ଉଈ ସମାଜରେ ଶ୍ରମିକର ସଂଖ୍ୟା ସବୁଠାରୁ ଅଧିକ । ଶ୍ରମିକ ସମାଜରେ ବହୁ ରକମର କାମ କରିଥାଏ । ଅଣ୍ଡା ରକ୍ଷଣାବେକ୍ଷଣ, ରାଣୀ ଓ ରାଜାର ଯତ୍ନ, ଖାଦ୍ୟ ଆହରଣ ଇତ୍ୟାଦି ।



ବୁଢ଼ିଆଣୀ

ଏହାଛଡା ଶ୍ରମିକ ଯେବେ ଅନୁଭବ କରେ ରାଣୀର ବୟସ ହେଲାଣି ଓ ସେ ଯଥେଷ୍ଟ ସଂଖ୍ୟାରେ ଅଣ୍ଡା ଦେଇ ପାରୁନାହିଁ । ସେତେବେଳେ ଶ୍ରମିକ ନିଜ ଶରୀରରୁ ନିଃସୃତ ଏକ ପ୍ରକାର ହରମୋନ୍ ଲାର୍ଭାଗୁଡ଼ିକୁ ଖାଇବାକୁ ଦିଅନ୍ତି । ହରମୋନ ଆଦି ଖାଇ ଲାର୍ଭାଗୁଡ଼ିକ ଉତ୍ପାଦନକ୍ଷମ ହୁଅନ୍ତି, ସେମାନଙ୍କ ଡେଣା ବାହାରେ, ପଦାକୁ ଆସି ସେମାନେ ମିଳିତ ହୁଅନ୍ତି ଏବଂ ନୂତନ ଜୀବନ ଆରମ୍ଭ କରନ୍ତି । ସମାଜରେ ସୈନିକର କାମ ନୂତନ ବସା ନିର୍ମାଣ, ବସା ମରାମତି, ଖାଦ୍ୟ ସନ୍ଧାନ ଓ ଶତ୍ରୁ କବଳରୁ ଦଳକୁ ରକ୍ଷା ।

ଉଈ ସମାଜର ପ୍ରତିଷ୍ଠାତା ପ୍ରଥମ ପୁରୁଷ ଓ ସ୍ତ୍ରୀ ସାଧାରଣତଃ ଦୀର୍ଘଜୀବି ହୋଇଥାନ୍ତି । କେତେକ ପ୍ରଜାତିରେ ପୁରୁଷ ଓ ସ୍ତ୍ରୀ ଆଠରୁ ବାର ବର୍ଷ ପର୍ଯ୍ୟନ୍ତ ବଞ୍ଚନ୍ତି । ବୟସ ବୃଦ୍ଧି ସଙ୍ଗେ ସଙ୍ଗେ ରାଣୀ ଉଈର ଶରୀରର ଅସ୍ୱାଭାବିକ ବୃଦ୍ଧି ହୁଏ । ସେତେବେଳେ ରାଣୀ ଏକ ମେସିନ ପରି ପ୍ରତି ଦୁଇ ସେକେଣ୍ଡରେ ଗୋଟିଏ ଲେଖାଏଁ ଅଣ୍ଡା ଦେଇଥାଏ । ଗୋଟିଏ ଉତ୍ପାଦନକ୍ଷମ ରାଣୀ ଉଈ ଦିନକୁ ହାରାହାରି ଆଠରୁ କୋଡ଼ିଏ ହଜାର ପର୍ଯ୍ୟନ୍ତ ଅଣ୍ଡା ଦେଇପାରେ । ଅଣ୍ଡା ଦେବା ସମୟରେ ପୁରୁଷଟି ରାଣୀ ପାଖରେ ଲାଗି ବସିଥାଏ ଓ ନିର୍ଦ୍ଦିଷ୍ଟ ବ୍ୟବଧାନରେ ରାଣୀ ସହ ମିଳିତ ହୋଇ ଶୁକ୍ରାଣୁ ସରବରାହ କରୁଥାଏ । ଉଭୟ ରାଜା ଓ ରାଣୀ ଯେତେବେଳେ ମିଳନ ଓ ଉତ୍ପାଦନ କ୍ରିୟାରେ ଲିପ୍ତ, ଶ୍ରମିକମାନେ ତାଙ୍କର ଖାଦ୍ୟ ଯୋଗାଣ, କୋଠରୀ ସଫାସୁତୁରା, ଅଣ୍ଡାର ଉପଯୁକ୍ତ ରକ୍ଷଣାବେକ୍ଷଣ କାର୍ଯ୍ୟ କରିଥାନ୍ତି ।

ପାଣିରେ ରହୁଥିବା କେତେକ ବୁଢ଼ିଆଣୀ ଏବଂ କେତେକ ପ୍ରଜାତିର ଗୋବର ପୋକକୁ ବାଦ୍ ଦେଲେ ପତଙ୍ଗ କୁଳରେ ଏକମାତ୍ର ଉଈ ରାଣୀ ଆକ୍ଷରୀକ ଅର୍ଥରେ ଏକ ବଲ୍ଲଭା । ମଣିଷର ସାମାଜିକ ବ୍ୟବସ୍ଥା ଦୃଷ୍ଟିକୋଣରୁ ଦେଖିଲେ ସ୍ତ୍ରୀ ଶାସିତ ସମାଜ ବ୍ୟବସ୍ଥାରେ ଏକ ସ୍ୱାମୀ ପ୍ରତି ଅନୁରାଗ ନିଃସନ୍ଦେହରେ ଉନ୍ନତ ରୁଚିର ପରିଚାୟକ ।

# ପତଙ୍ଗର ସନ୍ତାନ ପାଳନ

ପିରାମିଡ଼ର ଦେଶ ଇଜିପଟକୁ ଗଲେ ମନ୍ଦିର ଗାତ୍ରରେ ଯେଉଁ ଚିତ୍ରଟି ସବୁଠୁ ଅଧିକ ଆଖିରେ ପଡ଼େ ତାହା ହେଉଛି ଏକ ଗୋବର ପୋକର ଚିତ୍ର । ଗୋବର ପୋକଟିଏ ଉପରୁ ଦେଖିଲେ ଯେପରି ଦେଖାଯାଏ ଅବିକଳ ସେଇ ପ୍ରତିକୃତିର ଚିହ୍ନଟିଏ ଏବେ ମଧ୍ୟ ସେଠାକାର ଲୋକେ ଏକ ପବିତ୍ର ପ୍ରତୀକ ରୂପରେ ମୁଦିରେ, ବାହୁବନ୍ଧନୀରେ, ହାର ଲକେଟରେ ଛାପ ମାରି ପିନ୍ଧନ୍ତି । ମରିଗଲେ ଚିହ୍ନଟିକୁ ବେକରେ ଥୋଇ ଲୋକେ ଶବ ସତ୍କାର କରନ୍ତି । ସ୍ମୃତିଚିହ୍ନ ହିସାବରେ ପର୍ଯ୍ୟଟକମାନେ ସେଇ ଛାପା ଥିବା ବିଭିନ୍ନ ଉପହାର ସାମଗ୍ରୀ ସାଥିରେ ଘେନି ଆସନ୍ତି । ପ୍ରାଚୀନ ଇଜିପଟ ସଭ୍ୟତା ଉପରେ ଯେଉଁମାନେ ବିଶେଷଜ୍ଞ ସେମାନେ ପ୍ରତୀକଟିର ସଠିକ ମୂଲ୍ୟାୟନ ଏ ଯାଏଁ କରିପାରି ନାହାନ୍ତି । ତେବେ କେତେକ ମନେ କରନ୍ତି ଗୋବର ପୋକ ସୂର୍ଯ୍ୟ ଦେବ 'ରା'ଙ୍କର ପ୍ରତୀକ । ଗୋବର ପୋକ ମୁଣ୍ଡରୁ ବାହାରି ଥିବା ଛ'ଟି ଦାନ୍ତ ଯାହା ସାହାଯ୍ୟରେ ପୋକଟି ଗୋବର ପେଣ୍ଡୁ ତିଆରି କରେ, ତାହା ହେଉଛି ସୂର୍ଯ୍ୟଙ୍କର ଛଟା । ଭଗବାନ 'ରା'ଙ୍କର କୃପା ଲାଭ ପାଇଁ ଲୋକେ ବୋଧହୁଏ ଏହିପରି ଏକ ପ୍ରତୀକ ବାଛିଥିଲେ । ମନରେ ପ୍ରଶ୍ନ ହୁଏ ଗୋବର ପୋକ ପରି ଆହୁରି ଅନେକ ପୋକର ଦାନ୍ତ ଓ ନିଶ ବାହାରିଛି, ତେବେ ଗୋବର ପୋକ ପ୍ରତି ଏ ସମ୍ମାନ କାହିଁକି ? କାହିଁକି ଗୋବର ପୋକ Sacred Scarb 'ପବିତ୍ର ଚିହ୍ନ' ରୂପେ ମନ୍ଦିର ମାନଙ୍କରେ ଶୋଭା ପାଉଛି । ହୋଇପାରେ ସେଦିନ ପରିଶ୍ରମୀ କର୍ମଠ ଇଜିପ୍ଟିୟମାନେ ଲକ୍ଷ୍ୟ କରିଥିଲେ ପୋକଟି ପ୍ରତିନିୟତ ଗୋବର ପେଣ୍ଡୁଟିଏ ତିଆରି କରି ପେଣ୍ଡୁଟିକୁ ଗଡ଼ଉଛି । ଭଗବାନ 'ରା' ଯେପରି ପ୍ରତିଦିନ ତାରାମାନଙ୍କୁ ସ୍ୱର୍ଗରୁ ପୃଥିବୀକୁ ଆଣନ୍ତି ଓ ପୁଣି ସୂର୍ଯ୍ୟ ଉଦୟ ହେଲେ ସେମାନଙ୍କୁ ଫେରେଇ ନିଅନ୍ତି । ଗୋବର ପୋକ ସେହିପରି ଗୋବର ପେଣ୍ଡୁକୁ ସୂର୍ଯ୍ୟ ଉଦୟରୁ ଅସ୍ତଯାଏ ଗଡ଼ଉଛି । କି ନିଷ୍ଠା ଏବଂ କର୍ମପ୍ରେରଣା ! ତେବେ ଗୋବର ପୋକଟି କାହିଁକି ପେଣ୍ଡୁ ଗଡ଼ାଏ ସେ ସମ୍ବନ୍ଧରେ ତାଙ୍କର କୌଣସି ଧାରଣା ନଥିଲା, ହେଲେ ସେମାନେ ଲକ୍ଷ୍ୟ କରିଥିଲେ ଗୋବର ପୋକ ପେଣ୍ଡୁଟିକୁ ଗଡ଼େଇ ନେଇ ନାଇଲ ନଦୀ କୂଳରେ ଥିବା ଗଡ଼ମାନଙ୍କରେ ପୋତି ଦେଉଛି । ପେଣ୍ଡୁ ପୋତିବାର ତିରିଶ ଦିନ ପରେ ସେହି ସ୍ଥାନରୁ ଏକ ନୂତନ ପୋକ ବାହାରୁଛି । ନୂତନ ପୋକର ଆବିର୍ଭାବ ନଦୀ ଅବବାହିକାରୁ ହେଉଥିବାରୁ ସେମାନେ ମନେ କରୁଥିଲେ ପବିତ୍ର ନାଇଲ ନଦୀର ଉର୍ବରା



ଗୋବର ପୋକ ତିଆରି କରୁଥିବା ଗୋବର ପେଣ୍ଡୁ

ଅବବାହିକାରୁ ହିଁ ଗୋବର ପୋକ ଜନ୍ମୁଛି ।

ଅଷ୍ଟାଦଶ ଶତାବ୍ଦୀରେ କୀଟତତ୍ତ୍ୱବିଦ୍ ଫ୍ୟାବର ଲକ୍ଷ୍ୟ କଲେ ଗୋବର ପୋକ ତିଆରି କରୁଥିବା ପେଣ୍ଡୁ ଭିତରେ ତା ଅଣ୍ଡାକୁ ସାଇତି ରଖୁଛି । ମା' ଯେପରି ତା'ର ଶିଶୁ ପୁତ୍ରକୁ ଦୋଳାରେ ଝୁଲେଇ ରଖେ ଗୋବର ପୋକ ସେଇପରି ଆଣ୍ଡାକୁ ପେଣ୍ଡୁ ସଦୃଶ ଦୋଳାରେ ସାଇତି ରଖୁଛି । ତେବେ ଝୁଲାକୁ ଆଗପଛ ନ କରି କେବଳ ଆଗକୁ ବା ପଛକୁ ଗଡ଼େଇ ନେଉଛି ।

ଆମ ଦେଶରେ ମିଳୁଥିବା ଅନେକ ଗୋବର ପୋକ ବନେଇଥିବା ଗୋବର ପେଣ୍ଡୁ ଚାରିପଟେ ମାଟିର ପଲସ୍ତରାଟିଏ କରିଦିଅନ୍ତି ଫଳରେ ତାହା ମସୃଣ ବାଟୁଲି ପରି ଦେଖାଯାଏ । ଅଧିକାଂଶ ଗୋବର ପୋକ ସନ୍ତାନର ରକ୍ଷଣାବେକ୍ଷଣ ପାଇଁ 'ଝୁଲା'ଟିଏ ବନାନ୍ତି । ତେବେ ଝୁଲାର ଆକାର ସବୁବେଳେ ଗୋଲାକାର ନ ହୋଇ ବେଳେବେଳେ ବଟିକା ପରି ବା କ୍ୟାପ୍‌ସ୍ୟୁଲ୍ ଆକାରର ମଧ ହୋଇଥାଏ ।

'ପ୍ରିୟା' ବା ସ୍ତ୍ରୀ ଭୂମିକାରେ କଙ୍କଡ଼ାବିଛା ଏକ ନୃଶଂସ ହିଂସ୍ର ଓ ସ୍ୱାର୍ଥପର ଜୀବଟିଏ ହେଲେ 'ମା' ରୂପରେ ସେ ସେତିକି ସ୍ନେହୀ ଓ ସନ୍ତାନ ବତ୍ସଳ । ବିଛା ମା' ଅଣ୍ଡା ଦେବାର ଅଳ୍ପ ସମୟ ମଧ୍ୟରେ ଅଣ୍ଡା ଫୁଟି ସେଥିରୁ ଛୁଆ ବାହାରେ । ଛୁଆଗୁଡ଼ିକ ସଙ୍ଗେ ସଙ୍ଗେ ମା' ପିଠିରେ ଚଢ଼ି ଯାଆନ୍ତି ଓ ଦାନ୍ତୁଆ ନଖ ସାହାଯ୍ୟରେ ମା'କୁ ଜାବୁଡ଼ି ଧରନ୍ତି । ଏହି ସମୟରେ ସେମାନେ ପରସ୍ପର ଛନ୍ଦାଛନ୍ଦି ହୋଇ ଏପରି ରହନ୍ତି ଯେ ପିଠିରୁ ସହଜରେ ଖସି ପଡ଼ନ୍ତି ନାହିଁ । ମା' ପିଠିରେ ସେମାନେ ପ୍ରଥମେ ଖୋଳପା ଛାଡ଼ନ୍ତି, ତା' ପରେ ପିଠିରୁ ଓହ୍ଲେଇ ସ୍ୱାଧୀନ ଜୀବନ ବିତାନ୍ତି ।

ଡାନାଲିଆ (Danalia) ନାମକ ଗୋଟିଏ ଜାତିର ଉଙ୍କୁଣୀ 'ମା' ନିଜ ପେଟ ତଳେ ଥଳିଟିଏ ଥାଏ । ଅଣ୍ଡା ଦେଲା ପରେ ଉଙ୍କୁଣୀଟି ସେଇ ମୁଣା ଭିତରେ ଅଣ୍ଡାଗୁଡ଼ିକ ରଖିଦିଏ । ଅଣ୍ଡାର ବୃଦ୍ଧି ମା ପେଟ ତଳେ ଥିବା ଥଳିରେ ହୋଇଥାଏ । କେତେକ ବୁଢ଼ିଆଣୀ ଅଣ୍ଡାଗୁଡ଼ିକୁ ରେଶମର ଗୁଟି ପରି 'କୋକୁନ' ଭିତରେ ରଖନ୍ତି । କୋକୁନଟି ମା' ପେଟ ସହ ବନ୍ଧା ହୋଇଥାଏ । କୋକୁନ ଭିତରେ ଅଣ୍ଡାର ବୃଦ୍ଧି ହୁଏ ।

ବସା ତିଆରି କରିବା ଏବଂ ସୁରକ୍ଷିତ ପରିବେଶରେ ଅଣ୍ଡା ଦେବା, ଅଣ୍ଡା ବୃଦ୍ଧି ବେଳର ରକ୍ଷଣାବେକ୍ଷଣ ଆଦି କାର୍ଯ୍ୟରେ ମହୁମାଛି, ଉଇ, ପିମ୍ପୁଡ଼ି ଆଦି ପତଙ୍ଗ ସିଦ୍ଧହସ୍ତ ହେଲେ ବିରୁଡ଼ି ମା' ଉପରୋକ୍ତ ପତଙ୍ଗମାନଙ୍କଠୁ କୌଣସି ଗୁଣରେ ଊଣା ନୁହେଁ । ବିରୁଡ଼ି ମା' ତା'ର ଏକୁଡ଼ି ଶାଳରେ ଛୋଟ ଛୋଟ ପୋକକୁ ଅଚେତ କରି ରଖି ଦିଏ; ଉଦ୍ଦେଶ୍ୟ ଅଣ୍ଡା ଫୁଟି ସେଥିରୁ ଲାର୍ଭା ବାହାରିଲେ ଖାଦ୍ୟ ଅନ୍ୱେଷଣ ପାଇଁ ଲାର୍ଭାକୁ ସଙ୍ଗେ ସଙ୍ଗେ ପଦାକୁ ଯିବାକୁ ହେବ ନାହିଁ । ମା' ସାଇତି ରଖିଥିବା ଖାଦ୍ୟ ହିଁ ସେମାନେ ଆହାର କରନ୍ତି । ବଡ଼ ହେଲା ପରେ କେତେ ବିରୁଡ଼ି ତା'ର ଆହାର ରୁଚୀରେ ପରିବର୍ତ୍ତନ କରାଏ ଓ ମାଂସାସୀ ନ ହୋଇ କେବଳ ଫୁଲରୁ ମହୁ ଖାଇ ଜୀବନ ଧାରଣ କରେ । ଆଉ କେତେକ ବିରୁଡ଼ି ନିଜ ଆହାର ପ୍ରତି ଭୀଷଣ ସଜାଗ । ଯେଉଁ ବିରୁଡ଼ି ବୁଢ଼ିଆଣୀକୁ ଆହାର କରେ ସେ ଅନ୍ୟ ପୋକ ଖାଏ ନାହିଁ ।

# ବରଣର ମାଳାଟି ସ୍ତ୍ରୀ ହାତରେ

ମିଳନରୁ ବଂଶବୃଦ୍ଧି କଣ ପ୍ରକୃତିର ଏକ ଖିଆଲ ଅଥବା ଏକ ଏକ ବହୁପରିକ୍ଷିତ ଓ ସୁଚିନ୍ତିତ ପରୀକ୍ଷାର ସଫଳ ଫସଲ ? ପ୍ରାଣୀକୁଳର ବିବର୍ତ୍ତନ ଧାରାଟି ଲକ୍ଷ୍ୟକଲେ ଗୋଟିଏ କଥା ସ୍ପଷ୍ଟ ହୁଏ, ତାହା ହେଉଛି ପ୍ରାଣୀର ଗଠନ, ମାନସିକତା ଓ ତା'ର ବ୍ୟବହାର ସରଳରୁ କ୍ରମ ଜଟିଳ ଆଡ଼କୁ ମୁହେଁଇଛି । ଏହି ଜଟିଳ (Complex) ହେବାର କାରଣ ଅବଶ୍ୟ ପ୍ରକୃତି ନିଜେ । ହିନ୍ଦୁମାନଙ୍କ ଦେବୀ କାଳୀଙ୍କ ପରି ପ୍ରକୃତିର ଗୋଟିଏ ହାତରେ ରହିଛି ବରାଭୟର ମୂଦ୍ରା, ଅନ୍ୟ ହାତରେ ସେ କରୁଛି ସଂହାର । ଅର୍ଥାତ୍ ପ୍ରକୃତି ନିଜେ ପ୍ରାଣୀକୁ ସୁଯୋଗ ଦେଉଛି ସେଇ ସୁଯୋଗ ନେଇ ପ୍ରାଣୀ ଯଦି ପ୍ରକୃତି ସହ ଆଗେଇ ଯାଇ ପାରିଲା ତେବେ ପ୍ରକୃତି ତାକୁ ଆଦରି ନେଉଛି ଅନ୍ୟଥା ପାଶୋରୀ ଦେଉଛି । ଏହି କାରଣରୁ ଆମେ ଆଜି ଚଳଚଞ୍ଚଳ ସୁଗଠିତ ମେରୁଦଣ୍ଡୀ ପ୍ରାଣୀକୁ ଦେଖିପାରୁଛୁ । କେବଳ ପତଙ୍ଗ କୁଳକୁ ଛାଡ଼ି ଦେଲେ, ମେରୁଦଣ୍ଡୀ ପ୍ରାଣୀଙ୍କ ଭଳି ସୁଗଠିତ ଓ ମନେଇ ନେବାର କ୍ଷମତାର ବୈଚିତ୍ର ଅନ୍ୟ ପ୍ରାଣୀଙ୍କଠି ଦେଖାଯାଏ ନାହିଁ ।

ଆଜିର ଚଞ୍ଚଳ ଏବଂ ସୁନିୟନ୍ତିତ ମେରୁଦଣ୍ଡୀ ପ୍ରାଣୀକୁ ଦେଖି କଳ୍ପନା କରିବା କଷ୍ଟ- ଏକଦା ଏହି କୁଳର ପୂର୍ବଜ ଥିଲେ ସ୍ଥବିର ହାର୍ଡ଼ମାନିଆ (Herdmania) ବା ଜିଆ ସଦୃଶ ବାଲାନୋଗ୍ଲୋସସ୍ (Balanoglossus) । ଅମେରୁଦଣ୍ଡୀରୁ ମେରୁଦଣ୍ଡୀର ବିବର୍ତ୍ତନ ନିଶ୍ଚିତ ଭାବରେ ପ୍ରକୃତିର ଏକ ଲମ୍ବ ପଦକ୍ଷେପ । ଇଂରାଜୀରେ ଯାହାକୁ କହନ୍ତି "a glaint leap" । ପ୍ରାଣୀ ବିଜ୍ଞାନୀମାନେ ହାର୍ଡ଼ମାନିଆ, ବାଲାନୋଗ୍ଲୋସସ୍, ଆମଫିଅକ୍ସସ, ସାଲପା, ଡ଼ୋଲିଅଲମ ଆଦି କ୍ଷୁଦ୍ର ପ୍ରାଣୀଗୁଡ଼ିକୁ ଅନୁଧ୍ୟାନ କଲା ବେଳେ, ସେମାନଙ୍କ କେତେକ ବିଚିତ୍ର ଚରିତ୍ର ପାଣୀବିଦ୍‌ମାନଙ୍କୁ ଅଡୁଆରେ ପକେଇଥିଲା, ଏହି ଗୋଷ୍ଠୀର ପ୍ରାଣୀଗୁଡ଼ିକର ଚରିତ୍ର ନା ସମ୍ପୂର୍ଣ୍ଣ ମେରୁଦଣ୍ଡୀୟ ଅଥବା ସମ୍ପୂର୍ଣ୍ଣ ଅମେରୁଦଣ୍ଡୀୟ । ଉପାୟ ନ ପାଇ ପ୍ରାଣୀବିଦ୍‌ମାନେ ଏହି ପ୍ରାଣୀମାନଙ୍କୁ



କିସିଂ ଗୁରାମୀର ପୂର୍ବରାଗ ଚୁମ୍ବନ ଯାହା ପଚିଶ ମିନିଟ୍ ପର୍ଯ୍ୟନ୍ତ ଲମ୍ବିଥାଏ

ପ୍ରୋଟୋକରଡ଼େଟ୍ (Protochordate) ନାମରେ ଆଖ୍ୟାୟିତ କଲେ । ଏମାନଙ୍କ ମଧ୍ୟରୁ ଆମଫିଅକ୍ସସ ନାମକ କ୍ଷୁଦ୍ର ପ୍ରାଣୀଟିର ଚରିତ୍ର ଏବେ ମଧ୍ୟ ପ୍ରାଣୀବିତ୍‌ମାନଙ୍କ ପାଇଁ ଏକ ପ୍ରହେଳିକା । ମେରୁଦଣ୍ଡୀ ଓ ଅମେରୁଦଣ୍ଡୀ ଗୋଷ୍ଠୀକୁ ଯୋଗ କରୁଛି ଆମଫିଅକ୍ସସ । ଲମ୍ବରେ ଏକରୁ ଦୁଇ ଇଞ୍ଚ, ହେଲେ କେତେ ଗୁଣର ଅଧିକାରୀ ? କ୍ଷୁଦ୍ର ଏହି ପ୍ରାଣୀଟିକୁ ଦେଖି ବିଶିଷ୍ଟ ପ୍ରାଣୀବିତ୍ ହକ୍ସଲେ ମନ୍ତବ୍ୟ ଦେଇଥିଲେ, 'ଯଦି ଆମଫିଅକ୍ସସ ଆବିଷ୍କୃତ ହୋଇ ନଥାନ୍ତା ତେବେ ତାହାକୁ ଉଦ୍ଭାବନ କରିବାକୁ ପଡ଼ନ୍ତା, ଆମର ସୌଭାଗ୍ୟ ଆମେ ଆମଫିଅକ୍ସସର ସନ୍ଧାନ ପାଇଛୁ ।' ମିଳନ ଉପଚାରରେ ଆମଫିଅକ୍ସସ ପୁରାତନ ପନ୍ଥୀ । ଅମେରୁଦଣ୍ଡୀ କୁଳର ନିଅମ ଅନୁସାରେ ଆମଫିଅକ୍ସସ ଶୁକ୍ରାଣୁ ଓ ଡିମ୍ବାଣୁଗୁଡ଼ିକୁ ପାଣିରେ ଛାଡ଼ିଦିଏ । ସେଇଠାରେ ସେମାନଙ୍କ ମିଳନ ହୁଏ ପରେ ଡିମ୍ବାଣୁର ବୃଦ୍ଧି ହୋଇ ସିଧା ସଳଖ ସେଥିରୁ ନୂଆ ଆମଫିଅକ୍ସସର ଜନ୍ମ ହୁଏ । ଏହି କୁଳର ହାର୍ଡ଼ମାନିଆର ବୈଚିତ୍ର୍ୟତା ଅନ୍ୟ ପ୍ରାଣୀଙ୍କଠି ବିରଳ । ସାଧାରଣତଃ ପ୍ରାଣୀର ବୃଦ୍ଧିବେଳେ ଯଦି ଏକ ଲାର୍ଭାବସ୍ଥା ଥାଏ ତେବେ ଲାର୍ଭାର ଚରିତ୍ର ପ୍ରାପ୍ତ ଅବସ୍ଥାଠାରୁ ନିମ୍ନମାନର ହୋଇଥାଏ । ଏହାହିଁ ନିୟମ । ହେଲେ ହାର୍ଡ଼ମାନିଆରେ ଏହି ନିୟମଟି ଓଲଟି ଯାଇଛି । ଏହାର ଲାର୍ଭା ଏକ ଉନ୍ନତ ବେଙ୍ଗଫୁଲା ପରି ହୋଇଥିବା ବେଳେ ଏହାର ପ୍ରାପ୍ତାବସ୍ଥା ଏକ ନିମ୍ନମାନର ଅମେରୁଦଣ୍ଡୀ ସଦୃଶ । ଇଂରାଜୀରେ ଏହି ପ୍ରକ୍ରିୟା ରିଟ୍ରୋଗ୍ରେସିଭ ମେଟାମରଫୋସିସ୍ ନାମରେ ପରିଚିତ ।

ପ୍ରୋଟୋକରଡ଼େଟ ପରେ ପରେ ବିବର୍ତ୍ତନ ସିଡ଼ିରେ ଯେଉଁମାନଙ୍କ ସ୍ଥାନ ସେମାନେ ହେଉଛନ୍ତି ମାଛ ଜାତୀୟ ପ୍ରାଣୀ । ପୃଥିବୀକୁ ଆସିବା ପରଠୁ ଅନ୍ୟ ମେରୁଦଣ୍ଡୀ ତୁଳନାରେ ମାଛର ଶାରିରୀକ ପରିବର୍ତ୍ତନ କମ ହୋଇଛି, ତେବେ କିଛି ପ୍ରାଚୀନ ମାଛ ସଦୃଶ ପ୍ରାଣୀ ଅଛନ୍ତି ସେମାନଙ୍କ ଚରିତ୍ର ମାଛମାନଙ୍କ ସହ ଜମାରୁ ଖାପ ଖାଏ ନାହିଁ । ଏହି ପ୍ରାଣୀଗୁଡ଼ିକର ତଳ କପାଟଟି ନାହିଁ । ତେଣୁ ପ୍ରାଣୀବିତ୍‌ମାନେ ସେମାନଙ୍କୁ 'ଆଗନାଥା' ନାମରେ ଅଭିହିତ କରିଛନ୍ତି । ଲ୍ୟାମ୍‌ପ୍ରେ ନାମକ ଆଗନାଥା ପୁରୁଷ ମାର୍ଚ୍ଚ ଏପ୍ରିଲ ମାସରେ ଶୋଷକ ପାଟି ସାହାଯ୍ୟରେ ସ୍ତ୍ରୀ ବେକ ଉପରକୁ ଶୋଷାଡ଼ି ଧରେ । ଏହି ସମୟରେ ନିଜର ସାପ ସଦୃଶ ଶରୀର ସାହାଯ୍ୟରେ ସେ ସ୍ତ୍ରୀ ଶରୀର ଚାରିପଟେ ଗୁଡ଼େଇ ନିଏ ଓ ସ୍ତ୍ରୀର ପେଟତଳକୁ ଚାପିଦିଏ, ଫଳରେ ସ୍ତ୍ରୀ ଅଣ୍ଡା ଦେଇଥାଏ । ପୁରୁଷ ସଙ୍ଗେ ସଙ୍ଗେ ଅଣ୍ଡାଗୁଡ଼ିକୁ ଶୁକ୍ରାଣୁ ଦ୍ୱାରା ନିଷିକ୍ତ କରାଇ ଦିଏ । କେତେକ ପ୍ରଜାତି ଲ୍ୟାମପ୍ରେର ଅଣ୍ଡା ସ୍ତ୍ରୀ ଶରୀର ଭିତରେ ଶୁକ୍ରାଣୁ ଦ୍ୱାରା ନିଷିକ୍ତ ହୋଇଥାଏ । ଆଲିଙ୍ଗନ ବେଳେ ପୁରୁଷ ସ୍ତ୍ରୀ ଶରୀର ମଧ୍ୟକୁ ଶୁକ୍ରାଣୁ ପୂରେଇ ଦିଏ । ଶରୀର ଭିତରେ ଅଣ୍ଡା ନିଷିକ୍ତ ହୁଏ, ପରେ ପରେ ସ୍ତ୍ରୀ ଅଣ୍ଡାଗୁଡ଼ିକୁ ପାଣିରେ ଛାଡ଼ିଦିଏ । ଅଣ୍ଡାଗୁଡ଼ିକର ବୃଦ୍ଧି ପରେ ସେଥିରୁ 'ଅ୍ୟାମୋସିଟିସ' ନାମକ ଏକ ଲାର୍ଭା ବାହାରେ । ଅ୍ୟାମୋସିଟିସର ରୂପାନ୍ତର ହୋଇ ସେଥିରୁ ନୂତନ ଲ୍ୟାମପ୍ରେର ଜନ୍ମ ହୁଏ ।

ଆଜି ପୃଥିବୀର ଜଳଭାଗରେ ଯେଉଁ ପ୍ରାଣୀଟି ମହାବିକ୍ରମରେ ରାଜୁତି କରୁଛି ସେମାନେ ହେଉଛନ୍ତି ମାଛ ଜାତୀୟ । କହିଲେ ଅତ୍ୟୁକ୍ତି ହେବ ନାହିଁ ପ୍ରକୃତି ଯଦି ମାଛକୁ ସ୍ଥଳଭାଗରେ ବିଚରଣ କରିବାର ସାମାନ୍ୟ ସୁଯୋଗ ଦିଅନ୍ତା, ଅଥବା ସ୍ଥଳଭାଗର ପ୍ରାଣୀ ପରି ମାଛ ନିଶ୍ୱାସ ନେଇ ପାରନ୍ତା, ତେବେ ବିବର୍ତ୍ତନ ଇତିହାସ ନିଶ୍ଚେ ଭିନ୍ନ ହୁଅନ୍ତା । ପାଣିରେ ମାଛର ଏକାଧିପତ୍ୟର ଅନ୍ୟତମ କାରଣ ତା'ର 'ମିଳନ କ୍ରିୟା' ଓ ପରିବେଶ ସହ ତା'ର ମନେଇ ନେବାର କ୍ଷମତା ।



ପାରାଡ଼ାଇଜ୍ ମାଛର ପୂର୍ବରାଗ



ମିଳନ ପରେ ପରେ ନୀଡ଼ ତିଆରି ପାଇଁ ପ୍ରସ୍ତୁତି



ଯେଉଁମାନେ ଆକ୍ୟୁଆରିୟମରେ (ବଡ଼ କାଚ ବମ୍‌ରେ ରହିଥିବା ନାଲି ନେଳି ମାଛ) ଥିବା ବିଭିନ୍ନ ମାଛର ଗିତିବିଧି ଲକ୍ଷ୍ୟ କରିଛନ୍ତି, ସେମାନେ ନିଶ୍ଚେ ଦେଖିଥିବେ ଅଣ୍ଡା ଦେବାର ସମୟ ହେଲେ ସିକ୍ଲିଡ୍‌, କ୍ରିପଟୋଡ଼ର୍ଣ୍ଣ ଆଦି ମାଛର ରଙ୍ଗ କିପରି ଉଜ୍ଜ୍ୱଳ ହୋଇଯାଏ । ଲ୍ୟାବରେଟୋରୀ ଆକ୍ୟୁଆରିୟମରେ ଥିବା ଷ୍ଟିକଲବ୍ୟାକ ଜାତୀୟ ପୁରୁଷ ମାଛର ରଙ୍ଗ ବଦଳେଇବାର ଦୃଶ୍ୟ ଦେଖିବାର ସୁଯୋଗ ଲେଖକର ହୋଇଛି । ଏହି ଦୁଇଟି ମାଛ ଦେଖିବାକୁ ଧୂସରିଆ । ଆକ୍ୟୁଆରିୟମର ବିପରୀତ ପଟରେ ନିଜ ଇଲାକା ଭିତରେ ପିଠିର ପକ୍ଷକୁ ଢାକି ବୁଲାବୁଲି କରନ୍ତି । ପରସ୍ପର ଭେଟାଭେଟି ହେଲେ ଛତା ଖୋଲିଲା ପରି ପିଠି ଓ ଛାତି ପାଖର ପକ୍ଷ ଦୁଇଟି ଖୋଲିଯାଏ । ଧୀରେ ଧୀରେ ମାଛ ଦୁଇଟିର ରଙ୍ଗ ଲାଲ ହୋଇଯାଏ, କିଛି ସମୟ ମାଛ ଦୁଇଟି ପରସ୍ପରକୁ ଅନେଇ ରହନ୍ତି, ତା'ପରେ ପୁଣି ନିଜ ଇଲାକାକୁ ଫେରି ଯାଆନ୍ତି ଓ ଧୀରେ ଧୀରେ ସେମାନଙ୍କ ରଙ୍ଗ ପୂର୍ବଭଳି ଧୂସରିଆ ହୋଇଯାଏ ।

ପୁରୁଷର ଏହି ରଙ୍ଗ ବଦଳେଇବା ଅର୍ଥ ଏକ ଅନ୍ୟକୁ ଦ୍ୱନ୍ଦ୍ୱରେ ଆହ୍ୱାନ । ସାଧାରଣତଃ ସ୍ତ୍ରୀ ଗର୍ଭୀଣୀ ହେଲେ ପୁରୁଷର ସାନିଧ୍ୟ ପାଇଁ ଲାଳାୟିତ ହୁଏ । ଏହି ସମୟରେ ଦୁଇଟି ପୁରୁଷ ଥିଲେ ପୁରୁଷ ଦୁଇଟି ଦ୍ୱନ୍ଦ୍ୱରେ ଅବତୀର୍ଣ୍ଣ ହୁଅନ୍ତି । ଦ୍ୱନ୍ଦ୍ୱରେ ପରାଜିତ ପୁରୁଷର ରଙ୍ଗ ବିବର୍ଣ୍ଣ ହୋଇଯାଏ ମାତ୍ର ବିଜୟୀ ପୁରୁଷର ରଙ୍ଗ ଆହୁରି ଉଜ୍ଜ୍ୱଳ ଦେଖାଯାଏ । ସ୍ତ୍ରୀଟି ଏବେ ବିଜୟୀର ରଙ୍ଗ ବାରି (?) ତା'ର ଅନୁଗାମିନୀ ହୋଇଥାଏ ।

ଅନେକ କ୍ଷେତ୍ରରେ କେବଳ ରଙ୍ଗ ବଦଳେଇ ବା ଦ୍ୱନ୍ଦ୍ୱରେ ଜିତି ପୁରୁଷ ସ୍ତ୍ରୀର ମନତୋଷିପାରେ ନାହିଁ । ଏଥିପାଇଁ ପ୍ରତ୍ୟେକ ପ୍ରଜାତିର ନିଜସ୍ୱ ପୂର୍ବରାଗ ପଦ୍ଧତି ଓ ଆଚାର ବିଧିମାନ ରହିଅଛି । ଦ୍ୱନ୍ଦ୍ୱ ପରେ ମିଳନ ଉନ୍ମୁଖ ପୁରୁଷ ଯଦି ଏକ ଦ୍ୱିତୀୟ ପୁରୁଷକୁ ଭେଟେ ତେବେ ପ୍ରଥମ ପୁରୁଷଟି ସ୍ତ୍ରୀ ଚାରିପଟେ ଘୁରି ବୁଲେ, ସତେ ଅବା ଆଗନ୍ତୁକକୁ ଜଣେଇ ଦିଏ, 'ଏ ସ୍ତ୍ରୀ ମୋର-ଏହାକୁ ମୁଁ ଜିତିଛି' ପ୍ରଥମର ଏହି ବ୍ୟବହାରରେ ଆଗନ୍ତୁକ ଯଦି ସେଠାରୁ ଚାଲି ନଯାଏ, ସେତେବେଳେ ପ୍ରଥମ ପୁରୁଷ ପୁଣି ନିଜର ପକ୍ଷ ମେଲି ରଙ୍ଗ ବଦଳାଏ ଓ ଦ୍ୱିତୀୟକୁ ଦ୍ୱନ୍ଦ୍ୱରେ ଆହ୍ୱାନ କରେ । ସାଧାରଣତଃ ଏପରି ସ୍ଥଳରେ ଦ୍ୱିତୀୟଟି ଦ୍ୱନ୍ଦ୍ୱରେ ନଯାଇ ହସି ହସି ସେ ସ୍ଥାନ ତ୍ୟାଗ କରେ ।

'ପାଇପ ଫିସ୍‌' ଦେଖିବାକୁ ଅନେକଟା ଛୋଟ ଗଣିଆ ମାଛ ପରି । ମିଳନ ପୂର୍ବରୁ ପୁରୁଷ 'ପାଇପ ଫିସ୍‌' ତଣ୍ଟି ପାଖ ହଳଦିଆ ବର୍ଣ୍ଣ ହୋଇଯାଏ । ହଳଦିଆ ରଙ୍ଗ ଦେଖି ସ୍ତ୍ରୀ ପାଇପ ଫିସ୍‌ ଉତ୍ତେଜିତ ହୁଏ ଓ ପୁରୁଷ ପାଖକୁ ଆଗେଇ ଆସେ । ପରୀକ୍ଷା କରି ଦେଖାଯାଇଛି ହଳଦିଆ ପ୍ଲାସଟିକ ବଲଟିଏ ଦେଖି ମଧ୍ୟ ସ୍ତ୍ରୀ ପାଇପ ଫିସ ଉତ୍ତେଜିତ ହୁଏ । ଉତ୍ତେଜିତ ହେଲେ ସ୍ତ୍ରୀ ପୁରୁଷ ଚାରିପଟେ ଘୁରିବୁଲେ, ପାଣି ଉପରକୁ ମୁଣ୍ଡ ଉଠେଇ ଡେଇଁଲା ପରି ପୁଣି ପାଣି ଭିତରକୁ ଚାଲିଯାଏ । ପୁରୁଷଠୁ ସମ୍ମତି ପାଇ ସ୍ତ୍ରୀ ପୁରୁଷ ଶରୀର ଚାରିପଟେ ଗୁଡ଼େଇ ହୋଇଯାଏ । ପୁରୁଷର ଉତ୍ତେଜନା ଅନୁଭବ କରି ସ୍ତ୍ରୀ ପାଣିରେ ଅଣ୍ଡା ଛାଡ଼ି ଦିଏ, ସଙ୍ଗେ ସଙ୍ଗେ ପୁରୁଷ ମଧ୍ୟ ଶୁକ୍ରାଣୁ ପାଣିରେ ଛାଡ଼ି ଦିଏ ।

ସାଲମନ ମାଛ ସ୍ତ୍ରୀ ମିଳନ ପାଇଁ ସଦା ସର୍ବଦା ସୁନ୍ଦର, ସ୍ୱାସ୍ଥ୍ୟବାନ ଓ ସବଳ ପୁରୁଷକୁ ହିଁ ବାଛିଥାଏ । ଆମେରିକୀୟ ବୈଜ୍ଞାନିକ ପି.ଟି. ୟଙ୍ଗ ଲକ୍ଷ କରିଛନ୍ତି, ସ୍ତ୍ରୀର ଅଣ୍ଡା ଦେବାର ସମୟ ହେଲେ ପୁରୁଷମାନଙ୍କ ଭିତରେ ପ୍ରଥମେ ତତ୍ପରତା ଦେଖାଯାଏ, ଏହି ସମୟରେ ଏକ ନିର୍ଦ୍ଦିଷ୍ଟ ଗାତ ବା ପଥର କୋରଡ଼ ଅଥବା ସନ୍ଧି ପାଇଁ ପୁରୁଷମାନଙ୍କ ଲଢ଼େଇ ହୋଇଥାଏ । ପୁରୁଷ ପରସ୍ପର ଭିତରେ ଲଢୁଥିବା ବେଳେ ସ୍ତ୍ରୀ ଚୁପ୍‌ଚାପ୍ ଗାତ ପାଖରେ ଅପେକ୍ଷା କରୁଥାଏ । ଲଢ଼େଇରେ ଜିତିଥିବା ସୁନ୍ଦର ଓ ସ୍ୱାସ୍ଥ୍ୟବାନ ପୁରୁଷକୁ ସ୍ତ୍ରୀ ତା'ର ଅଣ୍ଡାଗୁଡ଼ିକୁ ନିଷିକ୍ତ କରିବା ପାଇଁ ଆମନ୍ତ୍ରଣ କରେ । ଲଢ଼େଇରେ କ୍ଷତ ବିକ୍ଷତ ପୁରୁଷ ଅନେକ ସମୟରେ ସମସ୍ତ ଅଣ୍ଡାକୁ ନିଷକ୍ତ କରିବାରେ ଅକ୍ଷମ ହୋଇଥାଏ । ସେତେବେଳେ ସ୍ତ୍ରୀ ସାଲମନ ପରିଣତ ଓ ଅଭିଜ୍ଞ ସାଲମନକୁ ଅଣ୍ଡାଗୁଡ଼ିକୁ ନିଷିକ୍ତ କରିବାରେ ଆମନ୍ତ୍ରଣ କରିଥାଏ । ୟଙ୍ଗ କହନ୍ତି ଅଣ୍ଡାଗୁଡ଼ିକୁ ନିଷିକ୍ତ କରିବା ପାଇଁ ସ୍ତ୍ରୀ ସାଲମନ ମାଛର ବ୍ୟବହାରରେ କୌଣସି ଅସ୍ୱାଭାବିକତା ନାହିଁ କାରଣ ସ୍ତ୍ରୀର ଉଦ୍ଦେଶ୍ୟ ଅଣ୍ଡାଗୁଡ଼ିକ ନିଷିକ୍ତ ହେଉ ସେଥିପାଇଁ ଏକ ବା ତତୋଧିକ ପୁରୁଷ ନିଯୁକ୍ତିରେ ବାଧା କେଉଁଠି ?

ମିଳନ ପାଇଁ ସୁନ୍ଦରୀ ସ୍ତ୍ରୀ ଅଥବା ପାରଙ୍ଗମ ପୁରୁଷର ବାଛିବା ପ୍ରକ୍ରିୟା (selection process) ଯୋଗୁଁ କେବଳ ସୁସ୍ଥ ସବଳ ସ୍ୱାସ୍ଥ୍ୟବାନ ଶୁକ୍ରାଣୁ ଓ ଡ଼ିମ୍ବାଣୁ ନିଜ ଗୁଣ ସମୂହକୁ ପରବର୍ତ୍ତୀ ପ୍ରଜନ୍ମକୁ ବଢ଼େଇ ଥାଏ । ଡାରଉଇନ ତାଙ୍କର ପ୍ରସିଦ୍ଧ ବହି " Origin of species" ପ୍ରକାଶର ବାର ବର୍ଷ ପରେ ଅର୍ଥାତ୍ ୧୮୭୧ ଖ୍ରୀଷ୍ଟାବ୍ଦରେ ଆଉ ଖଣ୍ଡେ ବହି "The Descent of man and selection in relation to sex" ପ୍ରକାଶ କଲେ । ଏହି ବହିଟିରେ ଡାରଉଇନ ମିଳନରେ ବାଛିବାର ପ୍ରଭାବ ଓ ତା'ର ଗୁରୁତ୍ୱ ଉପରେ ଆଲୋକପାତ କଲେ । ଡାରଉଇନ କହିଲେ, ''ମଣିଷ ସମାଜରେ ସ୍ତ୍ରୀ ମିଳନ ପାଇଁ ସେଇ ପୁରୁଷକୁ ପସନ୍ଦ କରେ ଯିଏ ଅନ୍ୟ ଅପେକ୍ଷା ଅଧିକ ସକ୍ଷମ, ମିଳନରେ ପାରଙ୍ଗମ ଏବଂ ଯିଏ ତା'ର ଭରଣପୋଷଣ ଅଥବା ଅଧିକ ସୁରକ୍ଷା ଦେଇପାରିବ । ଏ ଚିନ୍ତା କେବଳ ମଣିଷର ନୁହେଁ, ମେରୁଦଣ୍ଡୀ କୁଳରେ ବାଛିବାର କ୍ଷମତା ପ୍ରକୃତି ସ୍ତ୍ରୀକୁ ହିଁ ଦେଇଛି ।

# ଗର୍ଭଧାରୀ ପିତା

ପ୍ରତ୍ୟେକ ପ୍ରାଣୀର ରହିଛି କିଛି ଚାରିତ୍ରିକ ବିଶିଷ୍ଟତା ଏବଂ ସେଥିସଙ୍ଗେ କିଛି ବ୍ୟବହାରିକ ବିଶେଷତ୍ୱ । ଆକ୍ୟୁଆରିୟମରେ ରହୁଥିବା ଅନେକ ମାଛ ପରସ୍ପରକୁ ବୋକ ଦିଅନ୍ତି । କିସିଂ ଗୁରାମୀ ନାମକ ମାଛର ବୋକ ଆଦାନ ପ୍ରଦାନ ଦୀର୍ଘ ପଚିଶ ମିନିଟ ପର୍ଯ୍ୟନ୍ତ ଲମ୍ବିଥାଏ । ଏଥିପାଇଁ ପୁରୁଷ ଓ ସ୍ତ୍ରୀ ମାଛ ସେମାନଙ୍କ ପ୍ରସାରିତ ଓଠକୁ ମଣିଷ ଢ଼ଙ୍ଗରେ ଲଗେଇ ପରସ୍ପରକୁ ମିଳନ ପାଇଁ ଉତ୍ସାହିତ କରନ୍ତି ।

ରୋହି ଭାକୁଡ଼ ଜାତୀୟ କେତେକ ଚାର (Char) ବାରବେଟ (Barbets) ମାଛ ପେଟକୁ ପେଟ ଲଗେଇ ପରସ୍ପରର ସାନିଧ୍ୟ ଉପଭୋଗ କରନ୍ତି । ଏହି ସ୍ପର୍ଶରେ ସ୍ତ୍ରୀ ଅଣ୍ଡା ଦେଇଦିଏ । ସଙ୍ଗେ ସଙ୍ଗେ ପୁରୁଷ ଶୁକ୍ରାଣୁ ଦ୍ୱାରା ଅଣ୍ଡାଗୁଡ଼ିକୁ ନିଷିକ୍ତ କରାଏ । ଆଉ କେତେକ ମାଛ ନଦୀରେ ଥିବା ପଥର ଆଦିରେ ପେଟକୁ ବାରମ୍ବାର ଘଷି ନିଅନ୍ତି । ଏହି ଘଷିବା ଫଳରେ ସ୍ତ୍ରୀ ଅଣ୍ଡାଗୁଡ଼ିକୁ ପାଣିରେ ଛାଡ଼ି ଦିଏ ।

ସିନ୍ଧୁଘୋଟକ ଜାତୀୟ ସ୍ତ୍ରୀ ମାଛ ପୁରୁଷ ଶରୀର ଚାରିପଟେ ଗୁଡ଼େଇ ହୋଇ ଆଲିଙ୍ଗନବଦ୍ଧ ହୁଏ । 'ସନ୍ଧୁଘୋଟକ' ସିନା ତା'ର ନାଁ ହେଲେ ଜାତିରେ ସେ ପୂରାପୂରି ମାଛଟିଏ । ଘୋଡ଼ା ପରି ମୁହଁଟି ଯୋଗୁଁ ଏପରି ନାଁ ହୋଇଛି । ଗର୍ଭଧାରଣର ଅଧିକାର ସବୁଠି ମାତାର ହେଲେ ପ୍ରକୃତିର ସବୁ ନିୟମରେ ରହିଛି କିଛି ବ୍ୟତିକ୍ରମ । ତେଣୁ ସିନ୍ଧୁଘୋଟକର ପିତା ଗର୍ଭଧାରଣ କରେ । ଏଥିପାଇଁ ପୁରୁଷ ସିନ୍ଧୁଘୋଟକ ତଳିପେଟରେ ରହିଛି ଥଳିଟିଏ । ଯେଉଁ ଥଳିରେ ସେ ଛୁଆଗୁଡ଼ିକୁ ବଡ଼ କରାଏ ।

ସିନ୍ଧୁଘୋଟକର ପୂର୍ବରାଗ କ୍ରିୟାରେ ସ୍ତ୍ରୀ ସକ୍ରିୟ ଭୂମିକା ନେଇଥାଏ । ଏହି ସମୟରେ ସ୍ତ୍ରୀ ଆପାତ ଲାଜକୁଳା ପୁରୁଷ ଚାରିପଟେ ପ୍ରଥମେ ଘୁରିବୁଲେ, ପରେ ପରେ ନିଜର ବଙ୍କୁଲି ଲାଙ୍ଗୁଡ଼ (Prehensile tail) ସାହାଯ୍ୟରେ ପୁରୁଷକୁ ଗୁଡ଼େଇ ଧରେ । କିଛି ସମୟ ପରେ ପୁରୁଷ ସ୍ତ୍ରୀ ଆଲିଙ୍ଗନରେ ସମ୍ମୋହିତ ହୋଇ, ସ୍ତ୍ରୀକୁ ନିଜ ବଙ୍କୁଲି ଲାଙ୍ଗୁଡ଼ ଦେଇ ଗୁଡ଼େଇ ଧରେ । ଆଲିଙ୍ଗନବଦ୍ଧ ଅବସ୍ଥାରେ ସେମାନେ କିଛି ସମୟ ପହଁରନ୍ତି । ଏହି ଅବସ୍ଥାରେ ପୁରୁଷ ତା'ର ତଳି ପେଟରେ ଥିବା ଥଳିକୁ ଫୁଲେଇ ଦିଏ । କିଛି ସମୟ ପରେ ସ୍ତ୍ରୀ ତା'ର ପୁରୁଷାଙ୍ଗ ସଦୃଶ ଜନନାଙ୍ଗଟିକୁ ପୁରୁଷର ଫୁଲି ଥିବା ଥଳି ଭିତରେ ପୁରେଇ ଦିଏ ଓ ଅଣ୍ଡା ଗୁଡ଼ିକୁ ପୁରୁଷର ଥଳି ଭିତରେ ଛାଡ଼ିଦିଏ ।



ଗର୍ଭଧାରୀ ପୁରୁଷ ଘୋଡ଼ାମାଛ

ଏହି କାମଟି ସ୍ତ୍ରୀ ଏକା ଥରକେ ନକରି ଆଲିଙ୍ଗନବଦ୍ଧ ଅବସ୍ଥାରେ ଖେପ ଖେପରେ କରିଥାଏ । ଥଳିରେ ଅଣ୍ଡା ପୂରିଗଲେ ପୁରୁଷ ଶୁକ୍ରାଣୁକୁ ଥଳି ମଧ୍ୟରେ ଅଜାଡ଼ି ଦିଏ । ଦେଖାଯାଇଛି ସମସ୍ତ ଅଣ୍ଡାକୁ ଥଳି ଭିତରେ ନ ଥୋଇଲା ଯାଏଁ ସ୍ତ୍ରୀର ଆଲିଙ୍ଗନ ଶୀଥିଳ ହୁଏ ନାହିଁ ।

ଅଣ୍ଡାଗୁଡ଼ିକର ବୃଦ୍ଧି ପୁରୁଷର ଥଳି ମଧ୍ୟରେ ହୋଇଥାଏ । ଅଣ୍ଡାଫୁଟି ସେଥିରୁ ଛୁଆଁଳ ବାହାରେ । ପିତା ଗର୍ଭରୁ ବାହାରି ଛୁଆଁଳ ନୂତନ ଜୀବନ ଆରମ୍ଭ କରିଥାଏ । ଦେଖାଯାଇଛି ଛୁଆଁଳଗୁଡ଼ିକ ଏକା ଥରକେ ଥଳିରୁ ବାହାରିବାକୁ ଚେଷ୍ଟା କରନ୍ତି ହେଲେ ଥଳିର ଦ୍ୱାରଟି ଛୋଟ ହୋଇଥିବାରୁ ପୁରୁଷ ବାରମ୍ବାର୍ ନିଜକୁ ସଙ୍କୁଚିତ କରାଇ ଦ୍ୱାରଟିକୁ ଉନ୍ମୁକ୍ତ ରଖିବାକୁ ଚେଷ୍ଟା କରେ । ଏହି ଅବସ୍ଥାରେ ପୁରୁଷକୁ ଦେଖିଲେ ମନେ ହେବ ସତେ ଅବା ସେ ପ୍ରସବ ବେଦନାରେ କୁକୁଡ଼େଇ ଯାଉଛି ।

# ଦାନବୀର ଲିଲିପୁଟ ସ୍ୱାମୀ

ଊନବିଂଶ ଶତାବ୍ଦୀର ଶେଷକୁ ସମ୍ରାଟମାନଙ୍କ ପୃଷ୍ଠପୋଷକତାରେ ବିଜ୍ଞାନୀମାନେ ଅନେକ ଗୁଡ଼ିଏ ସାମୁଦ୍ରିକ ଅଭିଯାନ କରିପାରିଥିଲେ । ଏ ସମସ୍ତ ଅଭିଯାନ ସମୁଦ୍ରତଳ ଅନ୍ଧାରୀ ମୂଲକରେ ରହୁଥିବା ପ୍ରାଣୀମାନଙ୍କ ଉପରେ ବିଶେଷ ଆଲୋକପାତ କରିଥିଲା । ବିଜ୍ଞାନୀମାନେ ଅନେକ ନୂତନ ପ୍ରାଣୀର ସନ୍ଧାନ ପାଇଲେ । ସେ ସମୟରେ ବୁଡ଼ାଜାହାଜ ବା ସମୁଦ୍ରତଳ ବିଜ୍ଞାନଗାର ଆଦିର ଉଦ୍ଭାବନ ହୋଇ ନଥାଏ, ତେଣୁ ବିଜ୍ଞାନୀମାନେ ଜାଲରେ ପଡୁଥିବା ବିଭିନ୍ନ ପ୍ରାଣୀମାନଙ୍କ ଶରୀର ଗଠନ ଓ ଅନ୍ତବୃନ୍ଦୁଳା ଆଦି ପରୀକ୍ଷା କରି ପରୋକ୍ଷ ଭାବେ ବିଭିନ୍ନ ତଥ୍ୟମାନ ପାଉଥିଲେ । ସେ ସମସ୍ତ ପରୋକ୍ଷ ତଥ୍ୟ ଉପରେ ନିର୍ଭର କରି ସେମାନେ ସମୁଦ୍ରତଳର ପ୍ରାଣୀମାନଙ୍କ ଜୀବନଯାତ୍ରା ପ୍ରଣାଳୀର ଏକ ରୂପରେଖ ପାଉଥିଲେ ।

ସମୁଦ୍ର ତଳେ ରହୁଥିବା ପ୍ରାଣୀମାନଙ୍କୁ ପ୍ରଧାନତଃ ଦୁଇଟି ଅସୁବିଧାର ସାମନା କରିବାକୁ ହୁଏ । ଆଲୋକର ଅଭାବ ଓ ମୁଣ୍ଡ ଉପରେ ମାଇଲ ମାଇଲ ବ୍ୟାପି ପାଣି ସ୍ତମ୍ଭର ଅତ୍ୟଧିକ ଚାପ । ଏହି ପ୍ରତିକୂଳତାରୁ ମୁକ୍ତି ପାଇଁ ଏଠାରେ ରହୁଥିବା ପ୍ରାଣୀମାନଙ୍କୁ ବିଭିନ୍ନ ଉପାୟର ଆଶ୍ରା ନିଅନ୍ତି । ଚାପରୁ ମୁକ୍ତି ପାଇଁ ଚେପଟା ଆକୃତି, ଶରୀରରୁ ଆଲୋକ ବିଚ୍ଛୁରଣ, ଶତ୍ରୁ କବଳରୁ ଆତ୍ମରକ୍ଷା ଲାଗି ଅନେକ ମାଛ ଦେହରୁ ବିଦ୍ୟୁତ୍ କରେଣ୍ଟ ମଧ୍ୟ ବାହାରିଥାଏ । କେତେକ ମାଛ ନିଜ ଶରୀରକୁ ବିଭତ୍ସ ଓ କଦାକାର କରି ଦାନବୀୟ ରୂପ ନେଇଥାନ୍ତି । ପ୍ରଥମ ଦେଖାରେ ମନେହେବ ସତେ ଅବା ପଥର ମୁଣ୍ଡାଟିଏ ପଡ଼ିଛି, ଆପାତଃ ମନ୍ଥର ଓ ଅଳସୁଆ ସ୍ତ୍ରୀ ଆଙ୍ଗଲାର ମାଛ (Angler Fish) ଶେଷୋକ୍ତ ଉପାୟରେ ନିଜକୁ ଶତ୍ରୁ କବଳରୁ ରକ୍ଷା କରିଥାଏ ।

ଅଳସୁଆ ଓ ମନ୍ଥର ଗତି ସମ୍ପନ୍ନ ହୋଇଥିବାରୁ ଏହି ମାଛଗୁଡ଼ିକ ମିଳନ ସମୟରେ ଉପଯୁକ୍ତ ପାତ୍ରଟିଏ (ସଙ୍ଗିନୀ)ଟିଏ ପାଆନ୍ତି ନାହିଁ । ତେଣୁ ଏକ ଅଭିନବ ଉପାୟରେ ସ୍ତ୍ରୀ ଆଙ୍ଗଲାର ପୁରୁଷକୁ ଆକୃଷ୍ଟ କରାଏ ।



ସ୍ତ୍ରୀ ଆଙ୍ଗଲାର ପେଟରେ ଲାଗିଥିବା କ୍ଷୁଦ୍ରାକୃତି ପୁରୁଷ

ଯେଉଁଦିନ ପ୍ରଥମ ଆଙ୍ଗଲାର ମାଛ ଜାଲରେ ପଡ଼ିଲା ସେଦିନ ତାହାର ବିଶାଳ ଆକୃତି ଓ ଦାନବୀୟ ରୂପ ବିଜ୍ଞାନୀମାନଙ୍କୁ ଚମତ୍କୃତ କରିଥିଲା । ମାଛଟି ଥିଲା ଗୋଟିଏ ସ୍ତ୍ରୀ ଆଙ୍ଗଲାର । ସେଦିନ ସମସ୍ତେ ଭାବିଲେ ପୁରୁଷ ଆଙ୍ଗଲାର ଆଉ କେତେ ବିରାଟ ଅଥବା ଉଦ୍ଭଟ ହୋଇଥିବ । ପୁରୁଷ ସନ୍ଧାନରେ ସମୁଦ୍ରର ବିଭିନ୍ନ ଅଞ୍ଚଳରେ ଥରକୁ ଥର ଜାଲ ପଡ଼ିଲା, ହେଲେ ପୁରୁଷର ସନ୍ଧାନ ମିଳିଲା ନାହିଁ । ଅନେକ ମଣିଲେ ଆଙ୍ଗଲାର ମାଛ ବୋଧହୁଏ ଉଭୟଲିଙ୍ଗୀ, ଏହାର ପୁଂ ଜନନାଙ୍ଗ କେବଳ ମିଳନ ସମୟରେ ହିଁ ବୃଦ୍ଧି ହୋଇ ପରେ ପରେ ଶରୀରରେ ମିଳେଇ ଯାଏ । ଆଉ ଦଳେ ଏ ତତ୍ତ୍ୱକୁ ନାକଚ କରି କହିଲେ ଜନନାଙ୍ଗ ମିଳେଇ ଯିବାର ଅବସ୍ଥା ନିମ୍ନବର୍ଗ ପ୍ରାଣୀଠି ହୁଏତ ସମ୍ଭବ ମାତ୍ର ମେରୁଦଣ୍ଡୀ କୂଳରେ ଏହା ଅସମ୍ଭବ ।

ଏହିଭଳି ଏକ ଦୋଘାଇରେ ପ୍ରାଣୀବିତ୍‌ମାନେ ଏସିରାଟିଡ଼ସ (Aceratides) ନାମକ ଏକ ନୂତନ ପ୍ରଜାତି ମାଛର ସନ୍ଧାନ ପାଇଲେ । ଏସିରାଟିଡ଼ସ କୁଳଟି ସ୍ତ୍ରୀ ବର୍ଜିତ । ଅନେକ ସନ୍ଦେହ କଲେ ତେବେ କ'ଣ ଏସିରାଟିଡ଼ସ ପୁରୁଷ ଆଙ୍ଗଲାର ? ଦାଉ ସାଧିଲା ସ୍ତ୍ରୀ ଆଙ୍ଗଲାର ଓ ଏସିରାଟିଡ଼ସର ରୂପ ଓ ବ୍ୟବହାର । ଆଙ୍ଗଲାର ଦେଖିବାକୁ ବିଶାଳ ଓ ଦାନବୀୟ ହେବା ସ୍ଥଳରେ ଏସିରାଟିଡ଼ସ ଦେଖିବାକୁ ଛୋଟ ମୁନିଆ ଥଣ୍ଡ ବିଶିଷ୍ଟ ଗଣିଆ ମାଛ ପରି । ବ୍ୟବହାରରେ ଆଙ୍ଗଲାର ଧୀର ମନ୍ଥର ହେବା ସ୍ଥଳେ ଏସିରାଟିଡ଼ସ କ୍ଷିପ୍ର ଓ ଚଞ୍ଚଳ । ଏ ସମସ୍ତ ବିଷମ ଚରିତ୍ରକୁ ଲକ୍ଷ୍ୟ କରି ଏସିରାଟିଡ଼ସକୁ ଆଙ୍ଗଲାରର ପୁରୁଷ ରୂପରେ କଳ୍ପନା କରିବା ବିଜ୍ଞାନୀମାନଙ୍କ ପକ୍ଷରେ ସହଜ ନଥିଲା ।

କିଛିଦିନ ପରେ 'ଡାନା' ନାମକ ଏକ ଜାହାଜରେ ଯାତ୍ରା କରୁଥିବା ବୈଜ୍ଞାନିକ ଜୋହାନ୍ସ ସ୍ମିଡ଼ଟ ପଶ୍ଚିମ ଭାରତୀୟ ଦ୍ୱୀପପୁଞ୍ଜ ନିକଟରେ ଏକ ବିଶାଳ ଆଙ୍ଗଲାର ମାଛର ସନ୍ଧାନ ପାଇଲେ । ଯୋଗକୁ ମାଛଟିର ତଳପେଟରେ ଜନନାଙ୍ଗ ନିକଟରେ ତିନୋଟି ଏସିରାଟିଡ଼ସ ମାଛ ଲାଗି ରହିଥିଲା । ସ୍ମିଡ଼ଟ ଲକ୍ଷ୍ୟ କଲେ ନିଜର ଲମ୍ବ ଥଣ୍ଡକୁ ଏସିରାଟିଡ଼ସ୍ ଆଙ୍ଗଲାର ପେଟ ମଧ୍ୟକୁ ପୁରେଇ ଦେଇ ନିଜ ଖାଦ୍ୟ ସଂଗ୍ରହ କରୁଛି । ସ୍ମିଡ଼ଟ ଭାବିଲେ ଅନ୍ୟ ପାଞ୍ଚଟା ପରଜୀବି ପରି ଏସିରାଟିଡ଼ସ ମଧ୍ୟ ଏକ ବାହ୍ୟ ପରଜୀବି । କିନ୍ତୁ ଅନ୍ୟ ପାଞ୍ଚଟା ବାହ୍ୟ ପରଜୀବି ପରି ହୋଇଥିଲେ ଏସିରାଟିଡ଼ସ ବିଜ୍ଞାନୀମାନଙ୍କ ଦୃଷ୍ଟି ଆକର୍ଷଣ କରନ୍ତା ନାହିଁ । ସେମାନେ ଲକ୍ଷ୍ୟ କଲେ ଏସିରାଟିଡ଼ସ ହିଁ ଅସଲରେ ଆଙ୍ଗଲାରର ଲିଲିପୁଟ ସ୍ୱାମୀ । ଅଣ୍ଡା ଦେବାର ସମୟ ହେଲେ ଏସିରାଟିଡ଼ସ ଆଙ୍ଗଲାରର ଜନନାଙ୍ଗ ନିକଟରେ ସାମୟିକ ଭାବେ ଲାଗି ରୁହେ ଓ ସେଇ ଅବସରରେ ସ୍ତ୍ରୀ ମିଳିତ ହୋଇ ଅନ୍ୟତ୍ର ଚାଲିଯାଏ ।

ମନରେ ପ୍ରଶ୍ନ ହୁଏ କୃମି ଜାତୀୟ ବୋନେଲିଆ ପୁରୁଷ ଆକାରରେ ସ୍ତ୍ରୀଠାରୁ ଯଥେଷ୍ଟ ଛୋଟ, ପରଜୀବି ଭାବରେ ଏହା ସ୍ତ୍ରୀ ଜନନାଙ୍ଗରେ ଜୀବନ ବିତଉଛି, ତେବେ ଏସିରାଟିଡ଼ସର ସେ ସମସ୍ତ ସୁଯୋଗ ଥାଇ ମଧ୍ୟ ସେ କାହିଁକି ସାମୟିକ ପରଜୀବି ହେଉଛି ? ସାଧାରଣତଃ ପ୍ରାଣୀ ଥରେ ଅନ୍ୟ ଉପରେ ନିର୍ଭର କଲେ, ସ୍ୱାଧୀନ ଜୀବନ ପାଇଁ ମଙ୍ଗେ ନାହିଁ । ତେବେ କ'ଣ ଏସିରାଟିଡ଼ସର ଆତ୍ମସମ୍ମାନବୋଧ ତା'ର ଏ ଦ୍ୱୈତ ଜୀବନ ପାଇଁ ଉଦ୍‌ବୁଦ୍ଧ କରେଇଛି ।

# ମିଳନ ପାଇଁ ଦେଶାନ୍ତର ଯାତ୍ରା

ଇତର ପ୍ରାଣୀ ଜୀବନର ଦୁଇଟି ଉଦ୍ଦେଶ୍ୟ: 'ଖାଦ୍ୟ ଆହରଣ' ଓ 'ବଂଶବୃଦ୍ଧି' । ଏହି ଦୁଇଟି କ୍ରିଆକୁ ଯେଉଁ ପ୍ରାଣୀ ଯେତେ ସୁଚାରୁ ଭାବେ ସମ୍ପନ୍ନ କରିପାରେ, ଜୀବନ ସଂଗ୍ରାମରେ ସେଇ ପ୍ରାଣୀ ଅନ୍ୟକୁ ପଛରେ ପକେଇ ଆଗକୁ ବଢ଼ି ଚାଲେ । ଏହି ଦୁଇଟି ଉଦ୍ଦେଶ୍ୟ ପୂରଣ ପାଇଁ ପ୍ରାଣୀ ପ୍ରକୃତି ସହ ବିଭିନ୍ନ ରକମର ମେଣ୍ଟ ବାନ୍ଧେ, ଫଳରେ ସେ ପ୍ରକୃତିର ଖିଆଲ ଓ ଇଚ୍ଛା ଅନୁସାରେ ନିଜକୁ ସାମିଲ କରିପାରେ । ପ୍ରକୃତିର ଖିଆଲ ବଡ଼ ବିଚିତ୍ର । ତା'ର କେଉଁଠି ଦିନ ତ କେଉଁଠି ରାତି, କେଉଁଠି ଖରା ତ କେଉଁଠି ବର୍ଷା, କେଉଁଠି ପ୍ରଚଣ୍ଡ ଗରମ ତ କେଉଁଠି ପ୍ରବଳ ଥଣ୍ଡା । ପ୍ରକୃତିର ଏ ସମସ୍ତ ବିଚିତ୍ରତାକୁ ଆଖି ଆଗରେ ରଖି ପ୍ରାଣୀ ସେଇ ମୁତାବକ ନିଜ ଜୀବନଯାତ୍ରା ପ୍ରଣାଳୀକୁ ମଧ୍ୟ ସଜାଡ଼ି ଥାଏ । ପ୍ରକୃତି ସହ ମନେଇ ନେବାର ବିଭିନ୍ନ ପ୍ରକ୍ରିୟା ମଧ୍ୟରେ ଦେଶାନ୍ତର ଗମନ ଏକ ସରଳ ପ୍ରକ୍ରିୟା ।

ଦେଶାନ୍ତର ଗମନରେ ବିହଙ୍ଗକୁଳର ସମତୁଲ୍ୟ ଯଦି କେହି ଥାଆନ୍ତି ତେବେ ସେମାନେ ହେଉଛନ୍ତି ମାଛ । ଦେଶାନ୍ତର ଗମନ ପାଇଁ ସମୁଦ୍ର ଓ ସମୁଦ୍ରକୂଳିଆ ନଦୀ ମୂହାଣମାନଙ୍କରେ ରହିଛି ଅସଂଖ୍ୟ ମାଛ ଚଲା ପଥ । କେଉଁ ଆବାହମାନ କାଳରୁ ମାଛ ତା'ର ନିର୍ଦ୍ଦିଷ୍ଟ ପଥମାନ ହୋଇ ଗୋଟିଏ ସ୍ଥାନରୁ ଅନ୍ୟସ୍ଥାନକୁ ଯାତ୍ରା କରିଥାଏ । ଏ ସମସ୍ତ ପଥ ସ୍ଥଳଭାଗରେ ଥିବା ନ୍ୟାସନାଲ ହାଇୱେ ଏକ୍ସପ୍ରେସ୍ ହାଇୱେ ପରି ସମୁଦ୍ରର ଗଭୀର ଅଞ୍ଚଳରୁ ଅଗଭୀର ଅଞ୍ଚଳ, ସମୁଦ୍ରରୁ ନଦୀ, ଏକ ନଦୀରୁ ଅନ୍ୟ ନଦୀକୁ ବ୍ୟାପିଛି । ପ୍ରତି ବର୍ଷ ନିର୍ଦ୍ଦିଷ୍ଟ ସମୟରେ ମାଛ ଏହି ପଥମାନ ଦେଇ ଦେଶାନ୍ତରକୁ ଯାଇଥାଏ ।

ଆମର ବହୁ ପରଚିତ ଇଲିଶି ମାଛ ରୁହେ ସମୁଦ୍ର ପାଣିରେ, ହେଲେ ଅଣ୍ଡା ଦେବା ଲାଗି ଏହା ମଧୁର ପାଣିକୁ ଆସିଥାଏ । ବର୍ଷା ଆରମ୍ଭରେ ନଈରେ ପ୍ରଥମ ଗୋଳିଆ ପାଣି ଆସିଲେ ଇଲିଶି ପାଣିର ଉଜାଣି ସ୍ରୋତରେ ସମୁଦ୍ରରୁ ନଈକୁ ଚାଲିଆସେ । ଏହି ଯାତ୍ରା ବେଳେ ଇଲିଶି ୨୦୦ରୁ ୪୦୦ କି.ମି. ବା ତାହାଠାରୁ ଅଧିକ ରାସ୍ତା ଅତିକ୍ରମ କରିଥାଏ । ସାଧାରଣତଃ, ନଦୀର ଉପର ମୁଣ୍ଡରେ ଇଲିଶି ଅଣ୍ଡା ଦେଇ ପୁଣି ସମୁଦ୍ରକୁ ଫେରି ଆସେ । ସ୍ୱାଧୀନତା ପୂର୍ବରୁ ଯେତେ ଗଙ୍ଗା ବା ମହାନଦୀ ଆଦି ନଦୀ ବକ୍ଷରେ ବନ୍ଧମାନ ତିଆରି ହୋଇ ନଥିଲା ଇଲିଶି ବନାରସ, ଲକ୍ଷ୍ନୌ ବା ଅମରକଣ୍ଟକ ପର୍ଯ୍ୟନ୍ତ ମାଡ଼ି ଯାଉଥିଲା ।

ଷ୍ଟରଜିଓନ (Sturgeon) ନିଜର ବାଲ୍ୟାବସ୍ଥା ମଧୁର ପାଣିରେ ବିତେଇ ଯୌବନ ସମୁଦ୍ରର ଲୁଣିଆ ପାଣିରେ ବିତେଇ ଥାଏ । ସମୁଦ୍ରରେ ସାତ ଆଠ ବର୍ଷ ରହିଲା ପରେ ପୁଣି ନିଜ ଜନ୍ମସ୍ଥାନକୁ ଫେରିଆସେ ଅଣ୍ଡା ଦେବା ପାଇଁ । ଗୋଟିଏ ମାଈ ଷ୍ଟରଜିଓନ ଏକା ଥରକେ ପ୍ରାୟ

ଷାଠିଏ ଲକ୍ଷ ଅଣ୍ଡା ଦେଇଥାଏ । ନଦୀରେ ଥିବା ପଥର କୋରଡ଼ ବା ବାଲିରେ ଗାତ କରି ସ୍ତ୍ରୀ ଅଣ୍ଡା ଦେଇଥାଏ । ଅଣ୍ଡା ଦେବା ଲାଗି ସ୍ତ୍ରୀ ଯେବେ ନଦୀ ମୁହାଣ ଆଡ଼କୁ ଯାଏ, ପୁରୁଷ ସେତେବେଳେ ସ୍ତ୍ରୀର ଅନୁଗାମିନୀ ହୁଏ ଓ ସ୍ତ୍ରୀ ଅଣ୍ଡା ଦେଇ ଦେଲେ ପୁରୁଷ ସଙ୍ଗେ ସଙ୍ଗେ ସେଗୁଡ଼ିକୁ ଶୁକ୍ରାଣୁ ଦ୍ୱାରା ନିଷିକ୍ତ କରାଏ । ଅଣ୍ଡାକୁ ବୃଦ୍ଧି ଲାଗି ସେଇଠାରେ ଛାଡ଼ି ଉଭୟ ପୁରୁଷ ଓ ସ୍ତ୍ରୀ ପୁଣି ସମୁଦ୍ରକୁ ଫେରି ଆସନ୍ତି ।

ଦେଶାନ୍ତର ଗମନ ଓ ପରେ ପରେ ସ୍ୱଗୃହକୁ ପ୍ରତ୍ୟାବର୍ତ୍ତନର ଚମତ୍କାରୀତାରେ ଇଲ (Eel) ମାଛର ସମକକ୍ଷ ହେବାର କ୍ଷମତା ଅନ୍ୟ କୌଣସି ମାଛର ନାହିଁ କହିଲେ ଚଳେ । ଇଲ ମାଛ ଦେଖିବାକୁ ଲମ୍ବାଳିଆ ସାପପରି । ଅନେକଟା ତୋଡ଼ି ମାଛ ପରି, ଦେହର ରଙ୍ଗ ଗାଢ଼ ଶାଗୁଆ । ବକ୍ଷ ଦେଶରେ ଯୋଡ଼ିଏ ଛୋଟ ଛୋଟ ପକ୍ଷ । ପିଠିରେ ଥିବା ପକ୍ଷଟି ଲମ୍ବିଛି ଲାଞ୍ଜ ପର୍ଯ୍ୟନ୍ତ ।

ଇଲ ମାଛ ତା'ର ଜୀବନ ଆରମ୍ଭ କରେ ଉତ୍ତର ଆଟଲାଣ୍ଟିକ ମହାସାଗରର ସାରଗାସୋ (Sargasso) ସମୁଦ୍ରରେ । ଏହିଠାରେ ଉଭୟ ଆମେରିକୀୟ ପ୍ରଜାତି ଓ ଇଉରୋପୀୟ ପ୍ରଜାତି ଅଣ୍ଡା ଦିଅନ୍ତି । ଅଣ୍ଡାଫୁଟି ସେଥିରୁ ଛୁଆଁଙ୍କ ବାହାରିଲେ ତାହା କିଛି ଦିନ ସେଇ ଅଞ୍ଚଳରେ ରୁହେ, ପରେ ଲାର୍ଭା ଅବସ୍ଥାରେ ହିଁ ଉତ୍ତର ଆମେରିକା ବା ଇଉରୋପ ଆଡ଼କୁ ଯାତ୍ରା ଆରମ୍ଭ କରେ । ଏହି ଯାତ୍ରାରେ ଲାର୍ଭାଗୁଡ଼ିକ ୩୦୦୦ରୁ ୪୮୦୦ କି.ମି. ପର୍ଯ୍ୟନ୍ତ ବାଟ ଅତିକ୍ରମ କରିଥାନ୍ତି । ଆଶ୍ଚର୍ଯ୍ୟର ବିଷୟ ଲାର୍ଭାଗୁଡ଼ିକ ସେମାନଙ୍କ ଯାତ୍ରାରେ ପିତାମାତା ବା ଅନ୍ୟ ଅଭିଜ୍ଞ ବନ୍ଧୁ ବା ଆତ୍ମୀୟର ସାହଚର୍ଯ୍ୟ ପାଆନ୍ତି ନାହିଁ, ତଥାପି ସେମାନେ ବାଟବଣା ନହୋଇ ନିର୍ଦ୍ଦିଷ୍ଟ ନଦୀମାନଙ୍କରେ ପହଞ୍ଚନ୍ତି । ଦେଖାଯାଇଛି, ଉତ୍ତର ଆମେରିକା ପ୍ରଜାତିର ଇଲ ଉତ୍ତର ଆମେରିକାକୁ ଏବଂ ଇଉରୋପ ପ୍ରଜାତିର ଇଲ ଇଉରୋପକୁ ଯାଇଛି । ନଦୀରେ ପାଞ୍ଚ ସାତ ବର୍ଷ ବିତେଇଲା ପରେ ସେମାନେ ଅଣ୍ଡା ଦେବା ପାଇଁ ଉପଯୁକ୍ତ ହୁଅନ୍ତି ଓ ପୁନଶ୍ଚ ଅଣ୍ଡା ଦେବା ପାଇଁ ଜନ୍ମ ସ୍ଥାନକୁ ଫେରି ଯାଆନ୍ତି । ସାଧାରଣତଃ ଅଣ୍ଡା ଦେଇ ସାରିବା ପରେ ଲମ୍ବା ଯାତ୍ରାର ପରିଶ୍ରମ ସହ୍ୟ କରି ନପାରି ଉଭୟ ପୁରୁଷ ଓ ସ୍ତ୍ରୀ ଅଳ୍ପଦିନରେ ମରିଯାଆନ୍ତି ।

ଇଲର ଏହି ବିଚିତ୍ର ବ୍ୟବହାର ଏଯାଏଁ ପ୍ରାଣୀବିତ୍‌ମାନଙ୍କ ପାଇଁ ଏକ ବିରାଟ ପ୍ରଶ୍ନବାଚୀ । କି ସୁଖ ଆଶାରେ ଇଲ ଏତେ କଷ୍ଟକର ଲମ୍ବ ଯାତ୍ରାକୁ ଆଦରି ନେଇଛି ? ବିଶାଳ ସମୁଦ୍ରରେ କେଉଁ ଚିହ୍ନକୁ ଲକ୍ଷ୍ୟ କରି ଇଲ ଲାର୍ଭା ତା'ର ପଥ ନିର୍ଦ୍ଦେଶ ପାଉଛି । ଜନ୍ମ ପରେ ଯିଏ ପିତାମାତାଙ୍କୁ ହରେଇଛି ସେ କିପରି ଉପଲବ୍ଧି କରୁଛି ତାକୁ ଉତ୍ତର ଆମେରିକା ବା ଇଉରୋପ ଯିବାକୁ ହେବ ।

ଏ ସମସ୍ତ ପ୍ରଶ୍ନର ଗୋଟିଏ ସହଜ ଉତ୍ତର ପ୍ରାଣୀବିତ୍‌ମାନେ ଦିଅନ୍ତି ତାହା ହେଉଛି, 'ଇଲ ତା'ର ବ୍ୟବହାର ଓ ଆଦବ କାଇଦା ଜନ୍ମ ସୂତ୍ରରେ ତା'ର ପିତାମାତାଙ୍କଠାରୁ ପାଇଥାଏ ।' ଇଲର ସମସ୍ତ ଗୁଣ ତା'ର 'ଜିନ'ରେ ଲେଖା ହୋଇଛି । ଅନ୍ୟ ଏକ ସମ୍ଭାବ୍ୟ ଉତ୍ତର ହେଉଛି ସମୁଦ୍ରର ବିଭିନ୍ନ ଅଞ୍ଚଳରେ ରହୁଛି ବିଭିନ୍ନ ଧରଣର ସ୍ରୋତ ଓ ବିଭିନ୍ନ ତାପମାତ୍ରା । ଇଲ ସେ ସ୍ରୋତରେ ସାମିଲ ହୋଇ ନିର୍ଦ୍ଦିଷ୍ଟ ସ୍ଥାନରେ ପହଞ୍ଚିଥାଏ ।

# ପ୍ରଥମ ପ୍ରଣୟ ସଙ୍ଗୀତ

ବର୍ଷାଦିନ ଆରମ୍ଭରେ କାମାର୍ତ୍ତ ପୁରୁଷ ବେଙ୍ଗର ରଡ଼ିକୁ ସଙ୍ଗୀତ କହିବାର ଆସ୍ପର୍ଦ୍ଧା ମୋର ନାହିଁ, ତେବେ ଆକ୍ଷରିକ ଅର୍ଥରେ ପ୍ରଥମ ମିଳନ ସଙ୍ଗୀତ ଗାଇ ଯଦି କେହି ତା'ର ପ୍ରଣୟୀକୁ ଆକର୍ଷଣ କରିଛି ତେବେ ସେମାନେ ହେଉଛନ୍ତି ଉଭୟଚର । ଆଜିର ବେଙ୍ଗ ସେଇ ସମସ୍ତ ଉଭୟଚରର ଉତ୍ତରସୂରୀ । ଆଜିକୁ ଚାରିକୋଟି ବର୍ଷ ତଳେ ପୃଥିବୀରେ ଶବ୍ଦ କହିଲେ ଥିଲା ପତ୍ରର ମର୍ମର, ନଦୀର କୁଳୁ କୁଳୁ ନାଦ, ସମୁଦ୍ରର ଘୋ ଘୋ ଗର୍ଜନ ବା ଜଳପ୍ରପାତର ଘର୍ଘର, ସେଥିରେ ମିଶିଥିଲା ଭ୍ରମର ବା ଝିଙ୍କାରୀ ଜାତୀୟ କିଛି କୀଟପତଙ୍ଗଙ୍କ ଡେଣା ଘର୍ଷଣରୁ ଜାତ ଝିଁ ଝିଁ ବା ଘୁଁ ଘୁଁ ଶବ୍ଦ । ସେଦିନ ସେଇ ସମସ୍ତ ଶବ୍ଦ ମେଳରେ ପୁରୁଷ ଉଭୟଚରର ଅଭିନବ ପ୍ରେମ ନିବେଦନ । ଉତ୍ତରରେ ସ୍ତ୍ରୀ ଉଭୟଚର କି ଧରଣର ସମ୍ମତି ଜଣେଇଥିଲା ତାହା କଳ୍ପନା କରିବା କଷ୍ଟ । ତେବେ ବାହ୍ୟ କାନ ନଥାଇ ମଧ୍ୟ ଆଜିର ପୁରୁଷ ବେଙ୍ଗର ନିମନ୍ତ୍ରଣ ସଙ୍ଗୀତକୁ ସ୍ତ୍ରୀ ବେଙ୍ଗ ଅନ୍ୟ ଶବ୍ଦ ମଧ୍ୟରୁ ସହଜରେ ବାରିପାରେ । ଏହାର କାରଣ କ'ଣ ବେଙ୍ଗର ଶ୍ରବଣେନ୍ଦ୍ରିୟ କେବଳ ମିଳନ ସଙ୍ଗୀତ ଶୁଣିବା ପାଇଁ ଉପଯୋଗୀ । ଖାଦ୍ୟ ଆହରଣ ବା ଆତ୍ମରକ୍ଷା ପାଇଁ ବେଙ୍ଗ ତା'ର ଶ୍ରବଣେନ୍ଦ୍ରିୟ ଉପରେ ନିର୍ଭର କରେ ନାହିଁ । ତେବେ ନିଜ ଇଲାକା ଚିହ୍ନଟ କରିବା ସ୍ୱଜାତୀୟ ବନ୍ଧୁମାନଙ୍କ ସହ



ବେଙ୍ଗର ମୈଥୁନ

ଆଳାପ କରିବା ଓ ଆତ୍ମରକ୍ଷା ଲାଗି ମଧ୍ୟ ବେଙ୍ଗ ରଡ଼ିଥାଏ ବୋଲି ଅନେକ ବେଙ୍ଗ ବିଶାରଦ ମନେକରନ୍ତି ।

ଉଭୟଚରର ସଂଜ୍ଞାନେଇ ପ୍ରାଣୀବିଜ୍ଞାନୀମାନେ ବିଭିନ୍ନ ମତ ପୋଷଣ କରନ୍ତି, ତେବେ ଉଭୟଚରର ଆକ୍ଷରିକ ଅର୍ଥ ଯେଉଁ ପ୍ରାଣୀ ଜଳ ଓ ସ୍ଥଳ ଉଭୟଠି ସମବିଚରଣ କରିପାରନ୍ତି । ଏହି ଅର୍ଥରେ ଅନେକ ସରୀସୃପ ଯେପରି କୁମ୍ଭୀର, କଇଁଚ ପୁଣି ବତକ ଆଦି ଅନେକ ପକ୍ଷୀ କେତେକ ସ୍ତନ୍ୟପାୟୀ ପ୍ରାଣୀ ମଧ୍ୟ ଉଭୟ ଜଳ ଓ ସ୍ଥଳରେ ସମବିଚରଣ କରିଥାନ୍ତି । ଅପର ପକ୍ଷରେ ଉଭୟଚର ଗୋଷ୍ଠୀର ହୋଇ ମଧ୍ୟ କେତେକ କାଠ ବେଙ୍ଗ କେବଳ ସ୍ଥଳଭାଗରେ ହିଁ ଜୀବନ ବିତେଇଥାନ୍ତି । ତେଣୁ ଉଭୟଚରର ନାମକରଣ ଯାହା ତାହାର ରହିବା ସ୍ଥାନ (Habitat) ଉପରେ ନିର୍ଭର କରି ହୋଇଛି ତାହା ସଦାବେଳେ ଉଭୟଚର ଗୋଷ୍ଠୀ ପାଇଁ ପ୍ରଯୁଜ୍ୟ ନୁହେଁ । ପ୍ରଫେସର ନ୍ୟୁମାନ କହନ୍ତି, ''ଉଭୟଚର ହେଲେ ମେରୁଦଣ୍ଡୀ ଗୋଷ୍ଠୀର ସେଇ ପ୍ରାଣୀ ଯାହାର ରକ୍ତ ଶୀତଳ ଓ ତ୍ୱକ୍ ଆବରଣହୀନ'' ବିବର୍ତ୍ତନ ପାହାଚରେ ଜଳଚର ମାଛ ଓ ସ୍ଥଳଚର ସରୀସୃପ ମଧ୍ୟରେ ଉଭୟଚରର ସ୍ଥାନ । ବ୍ୟବହାର ଓ ରହିବା ସ୍ଥାନକୁ ଦେଖିଲେ ଦୁଇଟି ସମ୍ପୂର୍ଣ୍ଣ ବିପରୀତ ଧର୍ମୀ ଗୋଷ୍ଠୀକୁ ଯୋଗ କରୁଛି ଉଭୟଚର । ତେବେ ଦୁଇ ନାଁରେ ଗୋଡ଼ ଦେଇ ଉଭୟଚର ଜଳରେ ଅଥବା ସ୍ଥଳରେ ନିଜକୁ ଠିକ୍ ମୁତାବକ ଖାପ ଖୁଆଇ ପାରିଛି । ଏହି କାରଣରୁ ପ୍ରାଣୀବିଜ୍ଞାନୀମାନେ ଉଭୟଚରକୁ ଏକ ପରାଜିତ ଗୋଷ୍ଠୀ ରୂପେ ଅଭିହିତ କରିଛନ୍ତି ।

ଆଜିକୁ ପ୍ରାୟ ଚାଳିଶ କୋଟି ବର୍ଷ ତଳେ, ଭୂତତ୍ତ୍ୱବିତ୍‌ମାନଙ୍କ କ୍ୟାଲେଣ୍ଡରରେ ଥିବା ଡ଼ିଭୋନିଅନ ଯୁଗରେ ସମୁଦ୍ରରେ ବିଭିନ୍ନ ପ୍ରଜାତିର ମଗର ମାଛ ଏବଂ ମଧୁର ପାଣିରେ ବିଭିନ୍ନ ପ୍ରଜାତିର କ୍ରସୋପଟେରିଜି ନାମକ ମାଛ ବିଚରଣ କରୁଥିଲେ । ସେଇ ସମୟରେ ପୃଥିବୀର ପରିବେଶରେ ଦେଖାଦେଲା ବହୁଳ ପରିବର୍ତ୍ତନ । ବାରମ୍ବାର ଅନାବୃଷ୍ଟି ସେଥି ସଙ୍ଗେ ପ୍ରବଳ ଖରା ଫଳରେ ନଦୀ ନାଳ ଝରଣା ଶୁଖିବାକୁ ଲାଗିଲା । ଅନନ୍ୟୋପାୟ ହୋଇ ମଧୁର ପାଣିରେ ରହୁଥିବା କ୍ରସୋପଟେରିଜି ମାଛ ଚେଷ୍ଟା କଲେ ପାଣି ବାହାରକୁ ଆସି ସ୍ଥଳଭାଗରେ ରହିବା ପାଇଁ ଆଉ କେତେକ ସମୁଦ୍ରକୁ ଫେରିଯିବା ପାଇଁ ମନସ୍ଥ କଲେ । ଯେଉଁମାନେ ସ୍ଥଳଭାଗକୁ ଆସିଲେ, ସେମାନେ ଶ୍ୱାସକାର୍ଯ୍ୟ ପାଇଁ ଫୁସ୍‌ଫୁସ୍ ଓ ଚାଲବୁଲ କରିବା ପାଇଁ ହାତଗୋଡ଼ର ଆବଶ୍ୟକତା ଅନୁଭବ କଲେ । କ୍ରମେ ଖାଦ୍ୟ ନଳୀରୁ ଫୁସ୍‌ଫୁସ୍ ଓ ପକ୍ଷ(fins) ଆଦିର ପରିବର୍ତ୍ତନ ହୋଇ ହାତ ଓ ଗୋଡ଼ ତିଆରି ହେଲା । ଏହି ସମୟରେ ସ୍ଥଳଭାଗରେ କୀଟପତଙ୍ଗ ଆଦି ଥିବାରୁ ସେମାନଙ୍କ ଖାଦ୍ୟ ଅଭାବ ହେଲା ନାହିଁ, ତେବେ ସମସ୍ୟା ହେଲା ବଂଶବୃଦ୍ଧି ନେଇ । ସଫଳ ଜୀବନ ପାଇଁ ଆବଶ୍ୟକ ସକ୍ଷମ ବଂଶବୃଦ୍ଧି । ବଂଶବୃଦ୍ଧି ପାଇଁ ଉଭୟଚରର ପ୍ରଧାନ ସମସ୍ୟା ହେଲା ଖୋଳପା ବିହୀନ ଅଣ୍ଡା । ଖୋଳପା ନଥିବାରୁ ସ୍ଥଳଭାଗରେ ଅଣ୍ଡା ଦେଲେ ଅଣ୍ଡା ଶୁଖିଯାଏ । ତେଣୁ ବେଙ୍ଗ ଜାତୀୟ ଉଭୟଚରଙ୍କୁ ଅଣ୍ଡା ଦେବା ପାଇଁ ଜଳୀୟ ପରିବେଶ ଉପରେ ନିର୍ଭର କରିବାକୁ ପଡ଼ିଥାଏ । ଏଥିପାଇଁ ବର୍ଷା ଦିନରେ ଯେବେ ନଈ ନାଳ ପୋଖରୀ ଆଦି ପୂର୍ଣ୍ଣ ହୋଇଯାଏ; ବେଙ୍ଗ ସେଇ ସମୟକୁ ଅଣ୍ଡା ଦେବା ପାଇଁ ବାଛିଥାଏ । ଏହି କାରଣରୁ ବର୍ଷରେ ଥରେ ମାତ୍ର ବେଙ୍ଗ ବଂଶ ବୃଦ୍ଧି କରିବାର ସୁଯୋଗ

ପାଏ । ଯେହେତୁ ବଂଶବୃଦ୍ଧି କରିବାର ସୁଯୋଗ କମ୍ ତେଣୁ ବେଙ୍ଗ ଏକା ଥରକେ ଅନେକ ଅଣ୍ଡା ଦିଏ ଓ ବିଭିନ୍ନ ଉପାୟରେ ଅଣ୍ଡା ଓ ସନ୍ତାନର ରକ୍ଷଣାବେକ୍ଷଣ କରିଥାଏ ।

ବର୍ଷାଦିନ ଆରମ୍ଭରେ ପୁରୁଷ ବେଙ୍ଗର ଡାକ ଶୁଣି ସ୍ତ୍ରୀ ବେଙ୍ଗ ଉତ୍ତେଜିତ ହୁଏ । ଉଭୟ ଭେଟା ଭେଟି ହେଲେ କିଛି ସମୟ ଡିଆଁ ଡିଇଁ କରି ମିଳିତ ହୁଅନ୍ତି । ମିଳନ ସମୟରେ ପୁରୁଷର ଆଗ ଗୋଡ଼ ତଳିପାରେ ମାଂସଳ ବିଣ୍ଡିଟିଏ ହୁଏ । ବିଣ୍ଡି ସାହାଯ୍ୟରେ ପୁରୁଷ ସ୍ତ୍ରୀକୁ ପିଠିପଟୁ ଯୋରରେ ଚାପି ଧରେ । ଏହି ଚାପରେ ସ୍ତ୍ରୀ ପେଟରେ ଥିବା ଅଣ୍ଡାଗୁଡ଼ିକୁ ପାଣିରେ ଛାଡ଼ି ଦିଏ । ସ୍ତ୍ରୀ ଅଣ୍ଡା ଦେଲା ପରେ ପରେ ପୁରୁଷ ତାହା ଉପରେ ଶୁକ୍ରାଣୁ ଛାଡ଼ି ଦିଏ ଓ ଅଣ୍ଡା ନିଷିକ୍ତ ହୁଏ ।

ବେଳେବେଳେ ଆଲିଙ୍ଗନବଦ୍ଧ ଅବସ୍ଥାରେ ପୁରୁଷ ଓ ସ୍ତ୍ରୀ ଏକାଦି କ୍ରମେ ଦୁଇ ତିନି ଦିନ କଟେଇଥାନ୍ତି । ଏହି ଅବସ୍ଥାରେ ପୁରୁଷ ବେଳେ ବେଳେ କ୍ରକ୍ କ୍ରକ୍ ଶବ୍ଦ କରିଥାଏ । ମିଳନ ଅବସ୍ଥାରେ ଯଦି ସେଠାରେ ଦ୍ୱିତୀୟ ପୁରୁଷ ଆସି ଉପସ୍ଥିତ ହୁଏ, ସେତେବେଳେ ଦ୍ୱିତୀୟଟି ଚେଷ୍ଟା କରେ ପ୍ରଥମଟିକୁ ମିଳନରୁ ନିବୃତ୍ତ କରିବା ପାଇଁ, ଯଦି ସେ ସେଥିରେ ସକ୍ଷମ ନହୁଏ ତେବେ ସେ ପ୍ରଥମ ପୁରୁଷ ଉପରେ ଚଢ଼ି ବସେ । ଏହିପରି ଅବସ୍ଥାରେ ସ୍ତ୍ରୀ ବେଙ୍ଗଟି ଦୁଇଟି ପୁରୁଷର ଚାପକୁ ସହ୍ୟ କରି ନ ପାରି ଛାଟି ପିଟି ହୁଏ । ଯଦି ସେ ପୁରୁଷ ଆଲିଙ୍ଗନରୁ ମୁକ୍ତି ପାଏ ତେବେ ତା'ର ଜୀବନ ରକ୍ଷା ହୁଏ, ନଚେତ୍ ଅତ୍ୟଧିକ ଚାପରେ ତା'ର ମଧ୍ୟ ମୃତ୍ୟୁ ହୋଇଥାଏ ।

# ଧାତ୍ରୀ ପିତା

ଗର୍ଭଧାରଣର ଅଧିକାର କେବଳ ମାତାର । ପ୍ରକୃତି କେବଳ ନାରୀକୁ ହିଁ ଏ ଅଧିକାର ଦେଇ ସମ୍ମାନିତ କରିଛି । ହେଲେ ପ୍ରକୃତିର ସବୁ ନିୟମରେ କିଛି ବେନିୟମ ରହିଛି, ତେଣୁ ମାଛ କୁଳର ସିନ୍ଧୁଘୋଟକର ପିତା ଗର୍ଭଧାରଣ କରେ, ତା'ର ଦେଖାଦେଖି ରାଇନୋଡ଼ରମା ଡାରଉଇନି ନାମକ 'ନାକୁଆ ବେଙ୍ଗ' ପୁରୁଷ ଗର୍ଭଧାରଣ କରେ ।

ମଣିଷଠି ପୁରୁଷର ଗର୍ଭଧାରଣ ଶାରୀରିକ କାରଣରୁ ସମ୍ଭବ ନୁହେଁ, ତଥାପି ଦକ୍ଷିଣ ଆମେରିକାରେ ରହୁଥିବା ବକାଇରୀ (Bakairi) ନାମକ ଏକ ମାତୃତାନ୍ତ୍ରିକ ସମ୍ପ୍ରଦାୟ ମଧ୍ୟରେ ଅଦ୍ଭୁତ ପ୍ରଥାଟିଏ ଲକ୍ଷ୍ୟ କରାଯାଏ । ସ୍ତ୍ରୀ ଯେବେ ସନ୍ତାନ ପ୍ରସବ ପାଇଁ କୌଣସି କୋଠରୀ ମଧ୍ୟକୁ ଯାଏ, ସ୍ୱାମୀ ସେଇ ସମୟରେ ନିକଟସ୍ଥ ଅନ୍ୟ ଏକ କୋଠରୀରେ ଆବଦ୍ଧ ରୁହେ ଓ ପ୍ରସୂତି ପରି ବ୍ୟବହାର କରେ । ସେଇ ସମୟରେ ପ୍ରସୂତିକୁ ଯେଉଁ ଖାଦ୍ୟ ଦିଆଯାଏ ପୁରୁଷକୁ ମଧ ଏକା ପ୍ରକାରର ପଥ୍ୟ ଦିଆଯାଏ । ସନ୍ତାନ ହୋଇଗଲେ ମାତା ନବଜାତକକୁ ପିତା ପାଖରେ ଛାଡ଼ିଦିଏ ଓ ପିତା ନବଜାତକର ସମସ୍ତ ଦେଖାଶୁଣା କରିଥାଏ । ଏପରି ଏକ ଖାପଛଡ଼ା ପ୍ରଥା ମଣିଷ ସମାଜରେ ଅଭିନବ ହେଲେ ହେଁ ବେଙ୍ଗ ସମାଜରେ ପିତାର ଗର୍ଭଧାରଣ (?) ଧାତ୍ରୀକାମ ଓ ସନ୍ତାନ ଲାଳନ ଇତ୍ୟାଦି କାମ ଏକ ଅତି ସାଧାରଣ ଘଟଣା କହିଲେ ଅତ୍ୟୁକ୍ତି ହେବ ନାହିଁ । ପ୍ରାଣୀ କୁଳକୁ ସନ୍ତାନ ଲାଳନ, ସନ୍ତାନର ଯତ୍ନ ଓ ରକ୍ଷଣାବେକ୍ଷଣର ଶିକ୍ଷା ଯଦି କେହି ଦେଇଛି ତେବେ ସେମାନେ ବେଙ୍ଗ ଗୋଷ୍ଠୀର ଉଭୟଚର ।



ଧାତ୍ରୀ ପିତା ବେଙ୍ଗ ପିଠିରେ ସନ୍ତାନ ଲାଳନ

ଇଟାଲି ଓ ଫ୍ରାନ୍ସରେ ମିଳୁଥିବା ପୁରୁଷ ଆଲିଟସ ବେଙ୍ଗର (Alytes abstericans) ଧାତ୍ରୀ ବିଦ୍ୟାରେ ନିପୁଣତା ଅନ୍ୟଠି ଦେଖାଯାଏ ନାହିଁ । ସ୍ତ୍ରୀର ଅଣ୍ଡା ଦେବାର ସମୟ ହେଲେ ପୁରୁଷ ପ୍ରଥମେ ସ୍ତ୍ରୀର ଗୁହ୍ୟଦ୍ୱାରକୁ ନିଜ ଆଗ ଗୋଡ଼ ଦେଇ ସାଉଁଳେଇ ଦିଏ । ସାଉଁଳେଇବା ପରେ ଯଦି ସ୍ତ୍ରୀ ଅଣ୍ଡା ନ ଦିଏ ତେବେ ପୁରୁଷ ଏକ ଅଭିଜ୍ଞ ଧାତ୍ରୀ ପରି ଅତି ଯତ୍ନରେ ଅଣ୍ଡାଗୁଡ଼ିକୁ ସ୍ତ୍ରୀର ଗୁହ୍ୟଦ୍ୱାରରୁ ବାହାରକୁ ନେଇ ଆସେ, ପରେ ପରେ ଅଣ୍ଡାଗୁଡ଼ିକୁ ନିଜ ପଛଗୋଡ଼ ଚାରିପଟେ ଗୁଡ଼େଇ ନିଏ । ଗୋଡ଼ରେ ଗୁଡ଼େଇବା ଅବସରରେ ପୁରୁଷ ନିଜ ଶୁକ୍ରାଣୁ ଦ୍ୱାରା ଅଣ୍ଡାଗୁଡ଼ିକୁ ନିଷିକ୍ତ କରାଏ । ଏହିପରି ଗୋଟିଏ ପୁରୁଷ ଏକା ଥରକେ ତିନି ଚାରୋଟି ସ୍ତ୍ରୀ ବେଙ୍ଗର ଅଣ୍ଡାଗୁଡ଼ିକୁ ନିଜ ଗୋଡ଼ ଚାରିପଟେ ଗୁଡ଼େଇ ଦିଏ । ଅଣ୍ଡାର ବୋଝକୁ ଗୋଡ଼ରେ ଗୁଡ଼େଇ ପୁରୁଷ ଓଦା ଘାସ ବା ସନ୍ତସନ୍ତିଆ ଯାଗା ମାନଙ୍କରେ ବିଶ୍ରାମ କରେ; ଉଦ୍ଦେଶ୍ୟ ଅଣ୍ଡାଗୁଡ଼ିକ ଯେପରି ଶୁଖି ନଯାଏ । ଏହା ଭିତରେ ଅଣ୍ଡାର ବୃଦ୍ଧି ହୁଏ ଓ ବେଙ୍ଗଫୁଲା ବାହାରିବା ସମୟ ହୁଏ । ଅଣ୍ଡା ଫୁଟି ସେଥିରୁ ପ୍ରଥମ ବେଙ୍ଗଫୁଲାଟି ବାହାରିବା ମାତ୍ରକେ ପିତାବେଙ୍ଗ ଡେଇଁ ଡେଇଁ ନିକଟସ୍ଥ ପୋଖରୀ ବା ନାଳ ଆଡ଼କୁ ଚାଲିଯାଏ । ସେଇଠାରେ ଅଣ୍ଡାଗୁଡ଼ିକୁ ଗୋଡ଼ରୁ ଛଡ଼େଇ ପାଣିରେ ଛାଡ଼ିଦିଏ । ସେଇଠି ବେଙ୍ଗଫୁଲାର ନୂତନ ଜୀବନ ଆରମ୍ଭ କରେ ।

'ବିଗଲ' ନାମକ ଜାହାଜରେ ଡାରଉଇନ ଯେବେ ଦକ୍ଷିଣ ଆମେରିକାର ଚିଲି ଉପକୂଳରେ ପହଞ୍ଚିଲେ, ସେଠାରେ ଝିଣ୍ଟିକା ଆକୃତିର କ୍ଷୁଦ୍ର କ୍ଷୁଦ୍ର ନାକୁଆ ବେଙ୍ଗ ତାଙ୍କର ଦୃଷ୍ଟି ଆକର୍ଷଣ କରିଥିଲା । ହାତୀର ଶୁଣ୍ଢ ପରି ଏହି ବେଙ୍ଗର ନାକ ବହୁତ ଲମ୍ବ ; ତେଣୁ ସ୍ଥାନୀୟ ଭାଷାରେ ଏହି ବେଙ୍ଗଗୁଡ଼ିକର ନାଁ ମଧ 'ନାକୁଆ ବେଙ୍ଗ' । ପରେ ପ୍ରାଣୀବିଜ୍ଞାନୀମାନେ ଡାରଉଇନଙ୍କ ନାମାନୁସାରେ ନାକୁଆ ବେଙ୍ଗର ନାଁ ଦେଲେ ରାଇନୋଡରମା ଡାରଉଇନି (Rhinoderma darwini) । ଡାରଉଇନ ଲକ୍ଷ୍ୟ କରିଥିଲେ କେତେକ ନାକୁଆ ବେଙ୍ଗର ତଳ କଳପାଟି ତଳକୁ ଥଳିଟିଏ ରହିଛି । ସେଇ ଥଳି ଭିତରୁ ଶିଶୁ ବେଙ୍ଗ ଫକ୍ ଫକ୍ ହୋଇ ଡେଉଁଛନ୍ତି । ଡାରଉଇନ ନାକୁଆ ବେଙ୍ଗର ଜୀବନଯାତ୍ରା ଲିପିବଦ୍ଧ କରିଥିଲେ, ହେଲେ ଥଳି ବୋହୁଥିବା ବେଙ୍ଗର ଲିଙ୍ଗ ସମ୍ବନ୍ଧରେ କୌଣସି ତଥ୍ୟ ଲିପିବଦ୍ଧ କରିପାରି ନଥିଲେ । ପରେ ଅବଶ୍ୟ ଜଣାପଡ଼ିଲା, ଏହି ବେଙ୍ଗଗୁଡ଼ିକ ଅସଲରେ ଗର୍ଭଧାରୀ ପିତା । ନାକୁଆ ବେଙ୍ଗର ସ୍ତ୍ରୀ ଅନେକ ପୁରୁଷ ମେଳରେ ଅଣ୍ଡା ଦିଏ । ସ୍ତ୍ରୀ ଅଣ୍ଡା ଦେଇ ସାରିବା ପରେ ପୁରୁଷ ଶୁକ୍ରାଣୁ ଦ୍ୱାରା ସେଗୁଡ଼ିକୁ ନିଷିକ୍ତ କରାଏ; ଓ ଅଣ୍ଡାଗୁଡ଼ିକୁ ଜଗି ରୁହେ । ପ୍ରାୟ ଦୁଇ ସପ୍ତାହ ପରେ ପୁରୁଷ ଯେବେ ଲକ୍ଷ୍ୟ କରେ ଅଣ୍ଡା ଭିତରେ ବେଙ୍ଗ ଶିଶୁ ଚଳପ୍ରଚଳ ହେଉଛି ସଙ୍ଗେ ସଙ୍ଗେ ପୁରୁଷ ଅଣ୍ଡାଗୁଡ଼ିକୁ ଗିଳି ପକାଏ ଓ ଅଣ୍ଡାଗୁଡ଼ିକୁ ଥଳି ଭିତରୁ ସ୍ଥାନାନ୍ତରୀତ କରେ । ଅଣ୍ଡାର ଅବଶିଷ୍ଟ ବୃଦ୍ଧି ଓ ରୂପାନ୍ତର ଥଳି ଭିତରେ ହୋଇଥାଏ ।

ଦକ୍ଷିଣ ଆମେରିକାର ସୁରୀନାମ ଅଞ୍ଚଳରେ ଦେଖାଯାଉଥିବା ଅନ୍ୟ ଏକ ବେଙ୍ଗ ପାଇପା (Pipa americans) । ଏହି ବେଙ୍ଗଗୁଡ଼ିକୁ ଅନେକେ ସୁରୀନାମ ଟୋଡ଼ ବୋଲି ମଧ କହନ୍ତି । ପାଇପାର ସନ୍ତାନ ଲାଳନ କ୍ରିୟା ଆହୁରି ଚମକପ୍ରଦ । ସ୍ତ୍ରୀ ପାଇପା ଅନ୍ୟ ସାଧାରଣ ବେଙ୍ଗ ପରି ଅଣ୍ଡା ଦିଏ ନାହିଁ ବା ଗଡ଼ିଆ ପୋଖରୀରେ ପାଇପା ବେଙ୍ଗଫୁଲା ଡେଇଁ ବୁଲେ ନାହିଁ । ଅଣ୍ଡାର ସମସ୍ତ ବୃଦ୍ଧି ସ୍ତ୍ରୀ ପାଇପାର ପିଠିରେ ହୋଇଥାଏ । ସ୍ତ୍ରୀ ପାଇପାର ପିଠିଟି ଦେଖିବାକୁ

ସାମାନ୍ୟ ପୋଡ଼ି ହୋଇଥିବା ଚକୁଳି ପିଠା ପରି, ପୁରାପୁରି ପାଲିସ ନ ହୋଇ ସାମାନ୍ୟ ଖଦଡ଼ିଆ । ଅଣ୍ଡା ଦେବା ସମୟ ହେଲେ ପୁରୁଷ ଛାତିରେ ସ୍ତ୍ରୀର ପଛପଟୁ ଚାପିଧରେ । କିଛି ସମୟ ଉତ୍ତାରୁ ସ୍ତ୍ରୀର ଗୁହ୍ୟଦ୍ୱାରଟି (Cloaca) ଗୋଟିଏ ଟିଉବ ପରି ପଦାକୁ ବାହାରି ଆସେ ଓ ସ୍ତ୍ରୀର ପିଠି ଉପରକୁ ମୋଡ଼ି ହୋଇଯାଏ । ଏହି ସମୟରେ ପୁରୁଷ ଟିଉବଟିକୁ ନିଜ ପେଟ ଓ ସ୍ତ୍ରୀର ପିଠି ମଝିରେ ରଖି ଜୋରରେ ଚାପ ଦିଏ, ଫଳରେ ଅଣ୍ଡାଗୁଡ଼ିକ ଗୁହ୍ୟଦ୍ୱାରରୁ ବାହାରି ସ୍ତ୍ରୀର ସଞ୍ଜ ପରି ପିଠିରେ ପୋତି ହୋଇଯାଏ । ଚାପ ଦେବା ଅବସରରେ ପୁରୁଷ ଶୁକ୍ରାଣୁ ଦ୍ୱାରା ନିଷିକ୍ତ କରାଏ । ଏହି ପ୍ରକ୍ରିୟାଟି ସରିଲେ ପୁରୁଷର ବାହୁବନ୍ଧନ ଶୀଥିଳ ହୁଏ । ସ୍ତ୍ରୀ ପୋଖରୀ ବା ନାଳ ଆଡ଼କୁ ଡେଇଁ ଡେଇଁ ପଳାଏ । ମିଳନର କିଛିଦିନ ପରେ ସ୍ତ୍ରୀ ପିଠି ଉପରେ ପତଳା ପ୍ରାୟ ସ୍ୱଚ୍ଛ ଚମଡ଼ାଟିଏ ବଢ଼ି ଅଣ୍ଡାଗୁଡ଼ିକୁ ଘୋଡ଼େଇଦିଏ । ଅଣ୍ଡାଗୁଡ଼ିକର ବୃଦ୍ଧି ମା' ପିଠିରେ ହୁଏ ଓ ପ୍ରାୟ ଦଶବାର ସପ୍ତାହ ପରେ ସେଥିରୁ ପୂର୍ଣ୍ଣାଙ୍ଗ ବେଙ୍ଗ ବାହାରେ । ପାଇପାର ସମଗୋତ୍ରୀୟ ଡ୍ୟାକ୍‌ଟିଲେଥ୍ରାର (Dactylethra) ମିଳନ ଓ ସନ୍ତାନ ଲାଳନ ଆଦି ପ୍ରକ୍ରିୟା ଆତି ସାଧାରଣ, ତେଣୁ ମନରେ ପ୍ରଶ୍ନ ହୁଏ ପାଇପା ମାତାର ସନ୍ତାନ ଲାଳନରେ ସାବଧାନତା କାହିଁକି ?

ବସାବାନ୍ଧି ଫେଣରେ ସନ୍ତାନର ରକ୍ଷଣାବେକ୍ଷଣରେ ଅନେକ ବେଙ୍ଗ ସିଦ୍ଧହସ୍ତ । ଆଫ୍ରିକା ଓ ଦକ୍ଷିଣ ଏସିଆରେ ମିଳୁଥିବା କେତେକ କାଠବେଙ୍ଗ ଅଣ୍ଡାଦେବା ପୂର୍ବରୁ ପାଣିରେ ଏକ ପ୍ରକାର ତରଳ ପଦାର୍ଥ ଛାଡ଼ିଦିଅନ୍ତି । ସେଥିସଙ୍ଗେ ଦୁଇ ଗୋଡ଼ରେ ପାଣିକୁ ଜୋରରେ ଥାପୁଡ଼େଇ ଥାଆନ୍ତି । ଥାପୁଡ଼େଇବା ଦ୍ୱାରା ପାଣିରେ ଫେଣ ହୁଏ । ଏହି ଫେଣର ଏକ ବିଶେଷତ୍ୱ ଏହା ସହଜରେ ନଷ୍ଟ ହୁଏ ନାହିଁ । ସ୍ତ୍ରୀ ବେଙ୍ଗ ଫେଣ ଉପରେ ଅଣ୍ଡାଦିଏ । ଅଣ୍ଡାରୁ ଶିଶୁବେଙ୍ଗ ବାହାରିବା ଯାଏ ମା' ବେଙ୍ଗ ଫେଣକୁ ଜଗି ବସି ରୁହେ ।



ବ୍ରାଜିଲରେ ମିଳୁଥିବା କିଛି କାଠବେଙ୍ଗ ସୁଦକ୍ଷ ମିସ୍ତ୍ରୀ ଭଳି କାଦୁଅରେ ଛୋଟ ଛୋଟ ଘର ବନେଇ ତାହା ଭିତରେ ଅଣ୍ଡା ଦିଅନ୍ତି । ଘର ତିଆରି ପାଇଁ ମିସ୍ତ୍ରୀ କାମ ପ୍ରଧାନତଃ ସ୍ତ୍ରୀ ବେଙ୍ଗ କରିଥାଏ । ହେଲେ ଉଭୟ ପୁରୁଷ ଓ ସ୍ତ୍ରୀ ବେଙ୍ଗ ବସାକୁ ଜଗି ରହନ୍ତି । ବସାଗୁଡ଼ିକ ଦେଖିବାକୁ ଛୋଟ ଛୋଟ ମୃତ ଖୋଲା ଆଗ୍ନେୟଗିରି ପରି । ରୂପାନ୍ତର ପରେ ଛୋଟ ବେଙ୍ଗ ବସାର ଉପରପଟୁ ଡେଇଁ ଡେଇଁ ପଦାକୁ ଆସନ୍ତି ।

ଏବେ ପୃଥିବୀରେ ମିଳୁଥିବା ସମସ୍ତ ଉଭୟଚରଙ୍କୁ ପ୍ରାଣୀ ବିଜ୍ଞାନୀମାନେ ତିନୋଟି ବିଭାଗରେ ଭାଗ କରିଛନ୍ତି । ପ୍ରଥମ ଦଳଟି ଦେଖିବାକୁ ହାତଗୋଡ଼ ନଥିବା ସାପ ପରି ଯାହାର ଇଂରାଜୀ ନାଁ ଜିମନୋଫିଓନା, ଅନ୍ୟ ଦଳଟି ଲାଙ୍ଗୁଡ଼ ବିଶିଷ୍ଟ ଇଉରୋଡ଼େଲା, ତୃତୀୟ ଦଳଟି ଲାଙ୍ଗୁଡ଼ ବିହୀନ ଆ୍ୟାନୁ୍ୟରା । ଏହି ତିନିଦଳ ଭିତରେ ଆ୍ୟାନୁ୍ୟରା ଗୋଷ୍ଠୀରେ ଥିବା ଉଭୟଚର ଅନ୍ୟ ଦୁଇ ଗୋଷ୍ଠୀ ଅପେକ୍ଷା ଉନ୍ନତତର । ସନ୍ତାନ ଲାଳନ ଓ ପୂର୍ବରାଗ ବ୍ୟବହାରରେ ଆ୍ୟାନୁ୍ୟରା ଅନ୍ୟ ଦୁଇ ଗୋଷ୍ଠୀଠାରୁ ପାହୁଣ୍ଡେ ଆଗକୁ ବଢ଼ି ରହିଛି । ଜିମନୋଫିଓନା ଗୋଷ୍ଠୀଟି ଯଦିଓ ସବୁଠାରୁ ପ୍ରାଚୀନ ତଥାପି ସନ୍ତାନ ଲାଳନରେ ଦକ୍ଷତାର ପରିଚୟ ଦିଅନ୍ତି । ଏମାନଙ୍କ ଭିତରୁ କେତେକ ଅଣ୍ଡା ନ ଦେଇ ସିଧାସଳଖ ଛୁଆ ଦିଅନ୍ତି ।

ସାଧାରଣତଃ ସ୍ତ୍ରୀ ଜିମନୋଫିଓନା ଗାତ ଭିତରେ ଅଣ୍ଡା ଦେଇଥାଏ । ଅଣ୍ଡା ଦେଇ ସାରିବା ପରେ ସ୍ତ୍ରୀ ଗାତ ଚାରିପଟେ ଗୁଡ଼େଇ ହୋଇ ଅଣ୍ଡାକୁ ଜଗିଥାଏ । ପୁରୁଷ ଆ୍ୟାନୁ୍ୟରା ବେଙ୍ଗ ପରି ସ୍ତ୍ରୀକୁ ମିଳନ ପାଇଁ ଆହ୍ୱାନ କରିବାର କ୍ଷମତା ଜିମନୋଫିଓନା ବା ଉଇରୋଡେଲାର ନାହିଁ । ତେବେ ଆଘ୍ରାଣ ବଳରେ ହିଁ ଇଉରୋଡ଼େଲା ପୁରୁଷ ସ୍ତ୍ରୀର ଅଣ୍ଡା ଦେବା ସମୟ ବୁଝିପାରେ । ଅଣ୍ଡା ଦେବାର ସମୟ ହେଲେ ସ୍ତ୍ରୀ ଥିବା ପାଣିରେ ଏକ ଧରଣର ଉତ୍କଟ ଗନ୍ଧ ବାହାରେ । ସେଇ ବାସନା ଶୁଙ୍ଘି ଦଳ ଦଳ ପୁରୁଷ ଇଉରୋଡ଼େଲା ସେଠାରେ ପହଞ୍ଚନ୍ତି ଓ ସ୍ତ୍ରୀ ଚାରିପଟେ ଲାଙ୍ଗୁଡ଼ ବାଡ଼େଇ ନିଜର ଉପସ୍ଥିତି ଜାହିର କରନ୍ତି । ଏହି ସମୟରେ ପୁରୁଷ ଶରୀରରୁ ମଧ୍ୟ ଏକ ଉତ୍ତେଜକ ବାସନା ବାହାରେ । ସାଥି ହୋଇ କିଛି ସମୟ ପହଁରିବା ପରେ ଏକ ନିର୍ଦ୍ଦିଷ୍ଟ ପୁରୁଷ ସହ ସ୍ତ୍ରୀ ଦଳରୁ ଅଲଗା ହୋଇଯାଏ । ପ୍ରଥମେ ସ୍ତ୍ରୀଟି ଦଳରୁ ଅଲଗା ହୋଇଯାଏ, ପରେ ପରେ ପୁରୁଷ ତା'ର ଅନୁଗାମିନୀ ହୁଏ । ଏହାପରେ ପୁରୁଷଟି ପୋଖରୀ ହୁଡ଼ା ବା ନାଳବନ୍ଧ ଉପରେ ଶୁକ୍ରାଣୁ ଥିବା ଗୋଜିଆ ଥଳିଟିଏ ଥୋଇଦିଏ । ପରେ ପରେ ସ୍ତ୍ରୀ ସେଇ ଥଳି ଉପରେ ଗୁହ୍ୟଦ୍ୱାର(cloaca)କୁ ଚାପିଧରେ ଫଳରେ ସମସ୍ତ ଶୁକ୍ରାଣୁ ସ୍ତ୍ରୀର ଗୁହ୍ୟଦ୍ୱାର ଭିତରକୁ ଚାଲିଯାଏ । ମିଳନରେ ପୁରୁଷର ଭୂମିକା ନାହିଁ କହିଲେ ଚଳେ । ତା'ର କେବଳ ଏକ ସାନ୍ତ୍ୱନା ସ୍ତ୍ରୀ ତା'ର ଶୁକ୍ରାଣୁ ଥିବା ଥଳିକୁ ଗ୍ରହଣ କରିଛି ।

ମେରୁଦଣ୍ଡୀ କୁଳରେ ଉଭୟଚର ଏକ ପରାଜିତ ଗୋଷ୍ଠୀ, ମାତ୍ର ଜୀବନ ସଂଗ୍ରାମରେ ସେମାନେ ଯେଉଁ ସାହସର ପରିଚୟ ଦେଇଛନ୍ତି ତାହା ଅନ୍ୟ ପ୍ରାଣୀଠି ବିରଳ । ଉଭୟଚର ନିଜ ଦୁର୍ବଳତା ସହ ପରିଚିତ । ସେ ସମସ୍ତ ଦୁର୍ବଳତାକୁ ନସ୍ୟାତ୍ କରି ଉଭୟଚର ବଞ୍ଚିଛି କେବଳ ତାର ସନ୍ତାନ ଲାଳନର ଦକ୍ଷତା ଓ ପାରଦର୍ଶୀତା ପାଇଁ ।

# ଏକ ଅଙ୍ଗର ସନ୍ଧାନରେ

ଶୁକ୍ରାଣୁ ଦ୍ୱାରା ଡିମ୍ବାଣୁ ଯେତେଦିନ ଯାଏଁ ପ୍ରକୃତି କୋଳରେ ନିଷିକ୍ତ ହେଉଥିଲା, ସେତେଦିନ ପର୍ଯ୍ୟନ୍ତ ପୁରୁଷକୁ ଏକ ପୁରୁଷାଙ୍ଗର ଆବଶ୍ୟକତା ହୋଇ ନଥିଲା । କାରଣ ବାହ୍ୟମିଳନରେ (External Fertilization) ଉଭୟ ପୁରୁଷ ଓ ସ୍ତ୍ରୀ ନିର୍ଦ୍ଦିଷ୍ଟ ସମୟରେ ଶୁକ୍ରାଣୁ ଓ ଡିମ୍ବାଣୁକୁ ପାଣିରେ ଛାଡ଼ି ଦେଉଥିଲେ । ପାଣିରେ ଶୁକ୍ରାଣୁ ଓ ଡିମ୍ବାଣୁ ପରସ୍ପର ସହ ପରିଚିତ ହୋଇ ମିଳିତ ହେଉଥିଲେ । ମିଳନ ପରେ ସୃଷ୍ଟ ଯୁଗ୍ମଜ ବା ଆଦିକୋଷର ବୃଦ୍ଧି ସାଧାରଣତ ଏକ ବା ଏକାଧିକ ଲାର୍ଭାବସ୍ଥା ଦେଇ ହେଉଥିଲା । ତେବେ ଯେଉଁଦିନରୁ ଏହି ମିଳନ ମାତାର ଶରୀର ମଧ୍ୟରେ ହେଲା ଡିମ୍ବାଣୁ ନିଷିକ୍ତ ପାଇଁ ଶୁକ୍ରାଣୁକୁ ମାତାର ଶରୀର ମଧ୍ୟରେ ଏକ ନିର୍ଦ୍ଦିଷ୍ଟ ପଥ ଅତିକ୍ରମ କରିବାକୁ ହେଲା । ଡିମ୍ବାଣୁ ସହ ମିଳନର ଏହି ପଥଟି କିଭଳି ସହଜରେ ଅତିକ୍ରମ କରିପାରିବ, ସେଥିପାଇଁ ଉଭୟ ପୁରୁଷ ଓ ସ୍ତ୍ରୀ ଯତ୍ନବାନ ହେଲେ । ସ୍ତ୍ରୀ ନୂତନ ଅତିଥିର ସୁଯୋଗ ସୁବିଧା ନିମନ୍ତେ ମିଳନର ପଥଟିକୁ ପିଚ୍ଛିଳ ଓ ଶୁକ୍ରାଣୁର ରହିବା ଉପଯୋଗୀ କରି ରଖିଲା; ଏଣେ ପୁରୁଷ ଏକ ପୁରୁଷାଙ୍ଗ ସାହାଯ୍ୟରେ ସେଇ ପଥରେ କିଛିବାଟ ଶୁକ୍ରାଣୁକୁ ବଳେଇ ନେଇ ଆସିଲା । ଏହିପରି ଉଭୟ ପୁରୁଷ ଓ ସ୍ତ୍ରୀ ପରସ୍ପରର ପରିପୂରକ ହୋଇ ମିଳନର କାର୍ଯ୍ୟଟିକୁ ସହଜ ଓ ସରଳ କରିଦେଲେ । ଶରୀର ମଧ୍ୟରେ ଶୁକ୍ରାଣୁ ଓ ଡିମ୍ବାଣୁର ମିଳନ ଫଳରେ ପ୍ରକୃତି ପ୍ରାଣୀକୁ ଦୁଇଟି ସୁବିଧା କରେଇଦେଲା । ଅନ୍ତଃମିଳନ (Internal Fertilization) ଦ୍ୱାରା ଡିମ୍ବାଣୁ ଓ ଶୁକ୍ରାଣୁର ଅପଚୟ ହେଲା ନାହିଁ । ଫଳରେ ଡିମ୍ବାଣୁର ସଂଖ୍ୟା କମିଗଲା, ଏବଂ ପୂର୍ଣ୍ଣାଙ୍ଗ ପ୍ରାପ୍ତି ପାଇଁ ପ୍ରାଣୀକୁ ଅଯଥା ଏକ ଲାର୍ଭାବସ୍ଥା ମଧ୍ୟ ଦେଇ ଯିବାକୁ ପଡ଼ିଲା ନାହିଁ ।

କଙ୍କଡ଼ା, ବୁଢ଼ିଆଣୀ, କେତେକ ଚେପଟା କୃମି, ଅନେକ ପତଙ୍ଗ ଏପରିକି ମଗର ମାଛ (Shark) ଜାତୀୟ କେତେକ ପୁରୁଷ ସ୍ତ୍ରୀ ସହ ମିଳନ ବେଳେ ପୁରୁଷାଙ୍ଗ ସଦୃଶ ଅଙ୍ଗଟିଏ



ସାପର ରତିକ୍ରିୟା

ବ୍ୟବହାର କରୁଥିଲେ ହେଁ, ଏହି ଅଙ୍ଗଗୁଡ଼ିକ ଯଥାର୍ଥ ପୁରୁଷାଙ୍ଗ ହେବାର ସୌଭାଗ୍ୟ ଲାଭ କରି ନାହିଁ । ମେରୁଦଣ୍ଡୀ କୁଳର ସରୀସୃପହିଁ ପ୍ରଥମ ପ୍ରାଣୀ, ଯାହାର ପୁରୁଷ ପ୍ରଥମ କରି ପୁରୁଷାଙ୍ଗ ଧାରଣ କରିବାର ସୁଯୋଗ ପାଇଛି । ତେବେ ଏହି ଅଙ୍ଗଟିର ଉପଯୁକ୍ତ ବ୍ୟବହାର ଅଧିକାଂଶ ସରୀସୃପ କରିପାରି ନାହାନ୍ତି । କେବଳ କୁମ୍ଭୀର ଓ କଇଁଛଠି ଏହି ଅଙ୍ଗଟି ପ୍ରକୃତ ମର୍ଯ୍ୟାଦା ପାଇଛି ।

ସରୀସୃପ ଗୋଷ୍ଠୀରୁ ଉଦ୍ଭବ ହୋଇଛି ଉଭୟ ସ୍ତନ୍ୟପାୟୀ ଓ ବିହଙ୍ଗ । ଏହି ଦୁଇକୁଳ ପ୍ରକୃତି ସହ ମନେଇ ନେବାର ପାରଙ୍ଗମତାରେ ଦୁଇଟି ଦିଗରେ ମନୋନିବେଶ କରିଛନ୍ତି । ପକ୍ଷୀକୁଳ ଉଡ଼ିବାରେ ମନୋନିବେଶ କରୁଥିବାରୁ ଶରୀରରୁ ବାହୁଲ୍ୟ ଅଙ୍ଗମାନଙ୍କୁ ତ୍ୟାଗ କରିଛନ୍ତି । ପୁରୁଷାଙ୍ଗର ଉପସ୍ଥିତିକୁ ବିହଙ୍ଗ ଏକ ବିଳାସିତା ମଣିଲେ । ତେଣୁ ଅଧିକାଂଶ ପୁରୁଷ ପକ୍ଷୀ ସଯତ୍ନରେ ପୁରୁଷାଙ୍ଗଟିକୁ ତ୍ୟାଗ କଲେ । ଏଣେ ସ୍ତନ୍ୟପାୟୀ କୁଳରେ ନିମ୍ନବର୍ଗର ପ୍ଲାଟିପସ ଜାତୀୟ ପ୍ରୋଟୋଥେରିଆ ଓ କଙ୍ଗାରୁ ଜାତୀୟ କେତେକ ମେଟାଥେରିଆକୁ ଛାଡ଼ିନେଲେ ଅନ୍ୟ ସମସ୍ତ ଇଉଥେରିୟ ବର୍ଗର ସ୍ତନ୍ୟପାୟୀ ପୁରୁଷ, ପୁରୁଷାଙ୍ଗକୁ ଅନ୍ୟତମ ମିଳନାଙ୍ଗ ହିସାବରେ ବ୍ୟବହାର କଲେ । ପୁରୁଷର ପୁରୁଷାଙ୍ଗ ସାଙ୍ଗକୁ ଏହି ବର୍ଗରେ ଅନ୍ୟ ଏକ ଅଙ୍ଗର ଉତ୍ପନ୍ନ ହେଲା । ତାହା ହେଉଛି ଗର୍ଭସ୍ଥ ସନ୍ତାନର ମାତା ସହ ନାଡ଼ (Placenta) ଦ୍ୱାରା ସଂଯୋଗ । ତେବେ ସେ କଥା ଅନ୍ୟଠି ।

ମଣିଷର ରୁଚିବୋଧ ମାପରେ ତଉଲିଲେ ଏଣ୍ଡୁଅ ଓ ଝିଟିପିଟି ଆଦି ସରୀସୃପର ମିଳନକ୍ରିଆକୁ ଧର୍ଷକାମର ଆଖ୍ୟା ଦିଆଯାଇପାରେ । ମିଳନ ଉନ୍ମୁଖ ପୁରୁଷ ଏଣ୍ଡୁଅ ସ୍ତ୍ରୀକୁ ଭେଟିଲେ ପ୍ରଥମେ ଦୁଇଟି ଆଗ ଗୋଡ଼ ଉପରେ ଭରାଦେଇ ମୁଣ୍ଡ ଟୁଙ୍ଗାରେ । ଏହି ସମୟରେ କେତେକ ପ୍ରଜାତିର ଏଣ୍ଡୁଅ ରଙ୍ଗ ବଦଳେଇ ସ୍ତ୍ରୀକୁ ଆକର୍ଷଣ କରନ୍ତି । ପୁରୁଷର ମୁଣ୍ଡ ଟୁଙ୍ଗୁରେଇବାରେ ସ୍ତ୍ରୀ ଯଦି କୌଣସି ପ୍ରତିକ୍ରିୟା ନ ଦେଖାଏ, ତେବେ ପୁରୁଷ 'ମୌନ ହିଁ ସମ୍ମତିର ଲକ୍ଷଣ' ଭାବି ସ୍ତ୍ରୀ ପାଖକୁ ଯାଏ ଓ ସ୍ତ୍ରୀର ପିଠିକୁ ଗେଲ କଲା ପରି ଚାଟିଦିଏ । ଚାଟିବା ଅବସରରେ ସ୍ତ୍ରୀର ଅସାବଧାନତାର ସୁଯୋଗ ନେଇ ପୁରୁଷ ହଠାତ୍ ସ୍ତ୍ରୀର ତଣ୍ଟି ବା ବେକକୁ କାମୁଡ଼ିଧରେ । ପୁରୁଷର ଏହି ଦଂଶନରେ ସ୍ତ୍ରୀ ଲାଙ୍ଗୁଡ଼ ବାଡ଼େଇ ଛାଟିପିଟି ହୁଏ । ଛାଟିପିଟି ହୋଇ ସ୍ତ୍ରୀ ଯଦି ପୁରୁଷ କବଳରୁ ଖସି ପଳାଏ ତେବେ ସ୍ତ୍ରୀର ମିଳନ ଇଚ୍ଛା ନାହିଁ ବୋଲି ପୁରୁଷ ବୁଝିଦିଏ ଓ ସ୍ତ୍ରୀର ପଶ୍ଚାତଧାବନ କରେ ନାହିଁ । ଯଦି ସ୍ତ୍ରୀ ପୁରୁଷର ଦଂଶନକୁ ସହ୍ୟକରେ ତେବେ ପୁରୁଷ ନିଜ ତଳପେଟକୁ ସ୍ତ୍ରୀର ତଳପେଟ ସହ ଯୋଡ଼ି ଦିଏ । ଏହି ସମୟରେ ଉଭୟଙ୍କ ମଳଦ୍ୱାରସ୍ଥ ସରୁ ଫାଟଟି ମୁହାଁମୁହିଁ ହୁଏ ଓ ପୁରୁଷ ମଳଦ୍ୱାର ଭିତରକୁ ଥିବା ଦୁଇଟି ଆଙ୍ଗୁଠି ସଦୃଶ ପୁରୁଷାଙ୍ଗ ସାହାଯ୍ୟରେ ସ୍ତ୍ରୀ ସହ ମିଳିତ ହୁଏ ।

ଏଣ୍ଡୁଅର ନିକଟ ଆତ୍ମୀୟ ସାପର ମିଳନ ଏଣ୍ଡୁଅପରି ଦାନବୀୟ ନୁହେଁ । ମିଳନ ପୂର୍ବରୁ ସାପର ପୂର୍ବରାଗ କ୍ରିୟା ଓ ମିଳନ ନୃତ୍ୟ ଦର୍ଶନ ଏକ ଶୁଭ ସଙ୍କେତ ବୋଲି ଅନେକ ବିଶ୍ୱାସ କରନ୍ତି । ସାପର ମିଳନ ସାଧାରଣତଃ ଖୋଲା ସ୍ଥାନମାନଙ୍କରେ ହୋଇଥାଏ । ମିଳନ ଇଚ୍ଛୁକ ନାଗ, ଗୋଖର ଆଦି ସାପର ପୁରୁଷ ଓ ସ୍ତ୍ରୀ ଭେଟାଭେଟି ହେଲେ ଫଣା ଟେକି ହିସ୍ ହିସ୍ ଶବ୍ଦ କରି ପରସ୍ପରକୁ ନିରିକ୍ଷଣ କରନ୍ତି, ଏହି ନିରିକ୍ଷଣ ପର୍ବରେ ଉଭୟଙ୍କ ପରିଚୟ ଓ ମନ ଦିଆ ନିଆ ହୋଇଥାଏ ।

ପରିଚୟ ପରେ ଦୁଇ ପ୍ରେମିକ ସାପ ପରସ୍ପର ଛନ୍ଦା ଛନ୍ଦି ହୋଇ ଆଲିଙ୍ଗନବଦ୍ଧ ହୁଅନ୍ତି । ଆଲିଙ୍ଗନବଦ୍ଧ ଅବସ୍ଥାରେ କେହି କାହାକୁ ଚୁମ୍ବନ କରନ୍ତି ନାହିଁ ବା ପୁରୁଷ ସ୍ତ୍ରୀକୁ ଦଂଶନ ମଧ୍ୟ କରେ ନାହିଁ । ଏପରି କଲେ ଅନ୍ୟଜଣଙ୍କ ମୃତ୍ୟୁ ନିଶ୍ଚିତ ଏହା ସାପ ପୂର୍ବରୁ ଜାଣିଥାଏ । ଆଲିଙ୍ଗନବଦ୍ଧ ଅବସ୍ଥାରେ ଏଣ୍ଡୁଅ ପରି ଦୁଇଟି ସାପ ମିଳିତ ହୁଅନ୍ତି ।

ସମୟ ଥିଲା ଯେତେବେଳେ ଏ ପୃଥିବୀର ବିଭିନ୍ନ ପ୍ରଜାତିର ବିଶାଳ ଡାଇନୋସରସ ବିଚରଣ କରୁଥିଲା । ସେ ସମସ୍ତ ବିଶାଳ ଡାଇନୋସରସର ଆକାର ଆଜିର ସ୍ଥଳଚର ପ୍ରାଣୀ ହାତୀ ବା ଗଣ୍ଡାଠାରୁ ଯଥେଷ୍ଟ ବଡ଼ ଥିଲା । ସେ ସମସ୍ତ ବିରାଟକାୟ ଡାଇନୋସରସ କିଭଳି ମିଳିତ ହେଉଥିଲେ, ସେମାନଙ୍କର କୌଣସି ପୂର୍ବରାଗ ନୃତ୍ୟ ବା ପ୍ରଣୟ ସଙ୍ଗୀତ ଥିଲା କି ? ପୁରୁଷ ଡାଇନୋସରସର ଏକ ପୁରୁଷାଙ୍ଗ ଥିଲା କି ? ଜୀବାଶ୍ମ ଅନୁଧାନ କରୁଥିବା ବୈଜ୍ଞାନିକମାନେ ଏ ସମ୍ବନ୍ଧରେ କୌଣସି ଆଲୋକପାତ କରିପାରି ନାହାନ୍ତି । ତେବେ ଡାଇନୋସରସର ଏକ ଦୂର ଆତ୍ମୀୟ କୁମ୍ଭୀର ତା'ର ପୁରୁଷାଙ୍ଗର ଉପଯୁକ୍ତ ବ୍ୟବହାର କରିଥାଏ ।

ପୁରୁଷ କୁମ୍ଭୀରର ଗୁହ୍ୟଦ୍ୱାରର ଭିତର ପଟ କାନ୍ଥରେ ରହିଛି ସୂଚୀଘନ (Coninal) ସଦୃଶ ପୁରୁଷାଙ୍ଗଟିଏ । ମିଳନ ଜନିତ ଉତ୍ତେଜନାରେ ପୁରୁଷାଙ୍ଗଟିରେ ଅତ୍ୟଧିକ ରକ୍ତ ସଞ୍ଚାଳିତ ହୁଏ ଫଳରେ ତାହା ପ୍ରସାରିତ ଓ ଉତ୍ତୋଳିତ ହୋଇ ଗୁହ୍ୟଦ୍ୱାରର ଫାଟ ଦେଇ ପଦାକୁ ବାହାରି ଆସେ । ମିଳନ ସମୟର ଉତ୍ତେଜନାରେ ପୁରୁଷ କୁମ୍ଭୀର ଅଦ୍ଭୁତ ଶବ୍ଦ କରେ ଓ ମାଲକୁସ୍ତି ଲଢ଼େଇ ବେଳେ ପହିଲିମାନ ଯେପରି ବିପକ୍ଷ ମଲ୍ଲକୁ ଚିତ କରାଏ, ଠିକ୍ ସେଇପରି ସ୍ତ୍ରୀକୁ ଚିତ କରେଇ ମିଳିତ ହୁଏ । ପୁରୁଷ ସ୍ତନ୍ୟପାୟୀ ପ୍ରାଣୀମାନଙ୍କ ପୁରୁଷାଙ୍ଗ ମଧ୍ୟରେ ଯେପରି ଏକ ନାଳୀକା ଥାଏ ଓ ନାଳୀକା ମଧ୍ୟ ଦେଇ ଶୁକ୍ରାଣୁ ସହଜରେ ସ୍ତ୍ରୀ ଜନନାଙ୍ଗ ମଧ୍ୟକୁ ପ୍ରବେଶ କରିଥାଏ । କୁମ୍ଭୀର ଆଦି ପ୍ରାଣୀରେ ପୁରୁଷାଙ୍ଗ ମଧ୍ୟରେ ଅନୁରୂପ ଏକ ନାଳୀକା ନଥାଏ, ତେଣୁ ତାରେ ପାଣି ଗଡ଼ିଯିବା ପରି ଶୁକ୍ରାଣୁ ଆପେ ଆପେ ସ୍ତ୍ରୀ ଜନନାଙ୍ଗ ମଧ୍ୟକୁ ଗଡ଼ିଯାଏ । ବିରାଟ ବପୁନେଇ ସ୍ତ୍ରୀ ଚିତ ହୋଇ ପଡ଼ିଗଲେ ପୂର୍ବାବସ୍ଥାକୁ ଫେରିବା ତା ପକ୍ଷରେ କଷ୍ଟଦାୟକ, ସୌଜନ୍ୟ ଖାତିରରେ ପୁରୁଷ ମିଳନ ହୋଇଗଲେ ସ୍ତ୍ରୀକୁ ତା'ର ପୂର୍ବାବସ୍ଥାକୁ ଲେଉଟାଇ ଦିଏ ।

ସରୀସୃପମାନଙ୍କ ମଧ୍ୟରେ କଇଁଚର ମିଳନ ଛନ୍ଦ ଅନେକ ମାର୍ଜିତ ଓ ସୁସଂହତ । କଇଁଛର ଧୀର ସ୍ଥିର ବ୍ୟବହାର ସହିତ ସମତା ରଖି ତାର ମିଳନ ପ୍ରକ୍ରିୟା ମଧ୍ୟ ଧୀର ମନ୍ଥର । ମିଳନ ସମୟରେ ପୁରୁଷ ଓ ସ୍ତ୍ରୀର ଭେଟ ହେଲେ ପ୍ରଥମେ ଦୁଇଜଣ ମୁଣ୍ଡଟିକୁ ଖୋଳପାରୁ ବାହାର କରି ପରସ୍ପର ନିକଟକୁ ଆସନ୍ତି ଓ ପରସ୍ପରକୁ ବୋକ ଦେଲା ପରି ଏକ ଅନ୍ୟର ମୁଣ୍ଡକୁ ସ୍ପର୍ଶ କରନ୍ତି । ଏହି ସ୍ପର୍ଶ ଉଭୟକୁ କାମାର୍ତ୍ତ କରାଏ ଓ ସ୍ତ୍ରୀ ନିଜର ପଶ୍ଚାତ ଦେଶକୁ ଖୋଳପା ବାହାରକୁ କାଢ଼ିଦିଏ ଓ ପୁରୁଷକୁ ଅପେକ୍ଷା କରେ । ସମ୍ମତି ପାଇ ପୁରୁଷ ସ୍ତ୍ରୀ ସହ ମିଳିତ ହୁଏ । ମିଳନର ସମୟ ଦଶରୁ କୋଡ଼ିଏ ଘଣ୍ଟା ପର୍ଯ୍ୟନ୍ତ ବ୍ୟାପ୍ତ ଥାଏ । କେତେକ ପୁରୁଷ କଇଁଚ ମିଳନ ପୂର୍ବରୁ ନିଜର କଣ୍ଟାଳିଆ ଲାଙ୍ଗୁଡ଼ରେ ସ୍ତ୍ରୀ ଗୁହ୍ୟଦ୍ୱାରକୁ ବାରମ୍ବାର ସ୍ପର୍ଶ କଲାରୁ ସ୍ତ୍ରୀର ଉତ୍ତେଜନା ବଢ଼ିଯାଏ ଓ ସ୍ତ୍ରୀ ନିଜର ପଶ୍ଚାତ ଦେଶକୁ ଯେତେଦୂର ପଦାକୁ ବାହାର କରିହେବ କରିଦେଇ ପୁରୁଷକୁ ମିଳିତ ହେବାରେ ସାହାଯ୍ୟ କରେ ।



ଅଣ୍ଡା ଦେବା ଲାଗି ସମୁଦ୍ରବେଳାରେ କଇଁଚର ଯାତ୍ରା

କେତେକ ପ୍ରଜାତିର ସ୍ତ୍ରୀ କଇଁଚର ଲଜ୍ୟା ଅନ୍ୟ କଇଁଚଠାରୁ ଅଧିକ । ଏହି ସ୍ତ୍ରୀମାନେ ସହଜରେ ମିଳନ ପାଇଁ ମଙ୍ଗନ୍ତି ନାହିଁ । ଏଥିପାଇଁ ପୁରୁଷ ତା'ର ଏକ ନିଜସ୍ୱ ଉପାୟରେ ସ୍ତ୍ରୀକୁ ମିଳନ ଉନ୍ମୁଖ କରେ । ମିଳନ ସମୟରେ ପୁରୁଷ ପ୍ରଥମେ ନାକରେ ମୁଥା ମାରିଲା ପରି ସ୍ତ୍ରୀ ମୁଣ୍ଡକୁ ତା'ର ଖୋଳପା ସାହାଯ୍ୟରେ ବାଡ଼େଇ ଦିଏ । ସହଜାତ ପ୍ରକ୍ରିୟାରେ ସ୍ତ୍ରୀ ତା' ମୁଣ୍ଡଟିକୁ ଖୋଳପା ଭିତରକୁ ଟାଣିନିଏ, ଏହି ସଙ୍କୋଚନ ବେଳେ ତା'ର ପଶ୍ଚାତ ଦେଶ ମନକୁ ମନ ପଦାକୁ ବାହାରି ଆସେ । ଯଦି ପଶ୍ଚାତ ଦେଶ ମନକୁ ମନ ପଦାକୁ ନ ବାହାରେ ତେବେ ପୁରୁଷ ସ୍ତ୍ରୀର କଡ଼କୁ ଯାଇ ପୁଣି ନିଜ ଖୋଳପା ସାହାଯ୍ୟରେ ସ୍ତ୍ରୀକୁ ଆଘାତ କରେ । ଦୁଇଟି ଖୋଳପାର ମାଡ଼ରେ ହେଉଥିବା ଠକ୍ ଠକ୍ ଶବ୍ଦରେ ବେଳେ ବେଳେ ସେଠାରେ ଅନ୍ୟ ଏକ ପୁରୁଷ କଇଁଚ ଆସି ପହଞ୍ଚିଯାଏ ଏବଂ ଦୁହେଁ ସ୍ତ୍ରୀଟି ପାଇଁ ଆଗଭର ହୋଇଯାଆନ୍ତି । ତେବେ ମିଳନର ସୁଯୋଗ କେବଳ ଜଣେ ପାଇଥାଏ ।

ପ୍ରାଣୀ ବ୍ୟବହାର ବିଜ୍ଞାନୀ କାର୍ଲ ଏସରିଚ ମୁରିସ ଜାତୀୟ କଇଁଚ (Moorish Tortoise)ର ପୂର୍ବରାଗ ଓ ମିଳନ ପ୍ରକ୍ରିୟା ବର୍ଣ୍ଣନା କରି ଲେଖିଛନ୍ତି, ''ପୁରୁଷଟି କିଛି ସମୟ ସ୍ତ୍ରୀ ଚାରିପଟେ ବୁଲିଲା ପରେ ହଠାତ୍ ସ୍ତ୍ରୀର ପିଠି ଉପରେ ଚଢ଼ି ବସିଲା । ନିଜର ଆଗ ଗୋଡ଼ ଦୁଇଟିକୁ ଆଗକୁ ଲମ୍ବେଇ ସ୍ତ୍ରୀର ପିଠିକୁ ଜାବୁଡ଼ି ଧରିଥାଏ, ତା'ପରେ କିଛି ସମୟ ଚୁପ୍‌ଚାପ୍ । ପୁରୁଷ ବୋଧହୁଏ ସ୍ତ୍ରୀର ପ୍ରତିକ୍ରିୟା ଦେଖୁଥାଏ- ନାଁ କୌଣସି ଅସ୍ୱାଭିକତା ନାହିଁ । ଏଥର ପୁରୁଷ ତା' ବେକଟିକୁ ଲମ୍ବେଇ ଦେଲା- ଦୂରରୁ ପିଲା କାନ୍ଦିଲାପରି ଆ..ଆ.. ଶବ୍ଦ । ଶବ୍ଦ ଲାଗି ରହିଲା ଦୁଇ ତିନି ମିନିଟ୍ । ଏହାପରେ ସ୍ତ୍ରୀର ପାଳି ସେ ମୁଣ୍ଡ ବାହାର କଲା ପ୍ରଥମେ ଆଗକୁ ତା'ପରେ ମୁଣ୍ଡ ବୁଲେଇ ଦେଖିବାକୁ ଚେଷ୍ଟା କଲା ଶବ୍ଦ କେଉଁଠୁ ଆସୁଛି । ଯେବେ ନିଶ୍ଚିତ ହୋଇଗଲା ଶବ୍ଦ କରୁଛି ତା'ର ପ୍ରିୟ ଧୀରେ ଧୀରେ ଆଗପଛ ହୋଇ ମିଳନରେ ପୁରୁଷକୁ ସହଯୋଗ କଲା ।''

ପାଣି ସହ ସଂସର୍ଗ ଛାଡ଼ି, ସରୀସୃପ ଯେବେ ସ୍ଥଳଭାଗରେ ସ୍ଥାୟୀ ଭାବେ ବସବାସ ଆରମ୍ଭ କଲା, ସେ ସମୟରେ ସ୍ଥଳଭାଗର ବିଭିନ୍ନ ବୈଚିତ୍ର୍ୟମୟ ପରିବେଶ ସହ ଖାପ ଖୁଆଇବା

ପାଇଁ ତାହାକୁ ବିଭିନ୍ନ ଉପାୟମାନ ସ୍ଥିର କରିବାକୁ ପଡ଼ିଲା ଓ ସେଇ ମୁତାବକ ସେ ବିଭିନ୍ନ ପରିବେଶ ସହ ନିଜକୁ ମନେଇଲା । କେତେକ ଏଣ୍ଡୁଅ ଗଛରେ ରହିବାକୁ ସ୍ଥିର କଲେ, ସାପ ଚାହିଁଲେ ଗାତରେ ରହିବା ପାଇଁ, କୁମ୍ଭୀର ଓ କଇଁଚ ପାଣିକୁ ସମ୍ପୂର୍ଣ୍ଣ ଭାବରେ ଛାଡ଼ି ପାରିଲେ ନାହିଁ । ଅଣ୍ଡା ଦେବା ପାଇଁ ଉଭୟ କୁମ୍ଭୀର ଓ କଇଁଚକୁ ସମୁଦ୍ର ବା ନଦୀ ତଟକୁ ଆସିବାକୁ ହେଲା । ଅଣ୍ଡା ନେଇ ଛୁଆ ଫୁଟିଲା ଯାଏଁ ଜଗିବସିବ ସେ ସୁବିଧା କଇଁଚ ମା' ବା ବାପାର ନାହିଁ । ଏହିପରି ଏକ ଦୋ ଘାଇରେ କଇଁଚ ମା' ସମୁଦ୍ର ତଟରେ ନିର୍ଦ୍ଦିଷ୍ଟ ସମୟରେ ଗାତ ଖୋଳି ଶହେରୁ ଶହେ ପଚିଶିଟି ପର୍ଯ୍ୟନ୍ତ ଅଣ୍ଡା ଦେଇଥାଏ । ଗାତ ଖୋଳିବା କାର୍ଯ୍ୟ କଇଁଚ ତା'ର ପଛ ଦୁଇ ଗୋଡ଼ ଓ ମୁନିଆ ଲାଞ୍ଜ ସାହାଯ୍ୟରେ କରିଥାଏ । ଗାତ ଖୋଳା ହୋଇଗଲେ ପ୍ରଥମେ ଅଣ୍ଡାଟି ତା ମନକୁ ଗାତ ଭିତରକୁ ଗଡିଯାଏ । ମାତ୍ର ପରବର୍ତ୍ତୀ ଅଣ୍ଡାଗୁଡ଼ିକୁ କଇଁଚ ମା' ଧୀରେ ଧୀରେ ଗାତ ଭିତରେ ଥୋଇ ଦିଏ । କାଳେ ଦୁଇଟି ଅଣ୍ଡା ମାଡ଼ ହୋଇ ଖୋଳପା ଫାଟିଯିବ । ତତଲା ବାଲିରେ ଅଣ୍ଡା ଉଷୁମ ହୋଇଥାଏ । ଉଷୁମ ହେଲାବେଳେ ତାପର ତାରତମ୍ୟରେ କଇଁଚର ଲିଙ୍ଗ ନିର୍ଣ୍ଣୟ ହୋଇଥାଏ । ସାଧାରଣତଃ ଛୁଆର ଆସିବାର ସମୟ ହେଲେ ଅଣ୍ଡାଫୁଟି ସେଥିରୁ ଛୁଆ ବାହାରେ, ଏହା ଫଳରେ ଛୁଆର ପାଣି ସହ ସହଜରେ କଇଁଚ ଛୁଆ ସମୁଦ୍ରକୁ ଚାଲିଯାଏ । ସମୁଦ୍ର ତଟରୁ ସମୁଦ୍ର ମଧ୍ୟକୁ ଯିବା ହିଁ କଇଁଚର ଜୀବନ ମରଣ ସମସ୍ୟା । ଜୀବନର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଦୌଡ଼ କଇଁଚ ତା ଜୀବନ ଆରମ୍ଭରେ ହିଁ ଦୌଡ଼ିଥାଏ । ଏହି ଦୌଡ଼ ବେଳେ ମୁଣ୍ଡ ଉପରେ ଉଡୁଥିବା ଚିଲ ଓ ଛଞ୍ଚାଣର କବଳରେ ପଡ଼ି ଅନେକ ଛୁଆ ମରି ହଜି ଯାଆନ୍ତି । ଏକ ହିସାବରୁ ଜଣା ପଡ଼ିଛି ଶତକଡ଼ା ପାଞ୍ଚରୁ କମ୍ ଭାଗ୍ୟବାନ କଇଁଚ ସମୁଦ୍ରକୁ ପହଞ୍ଚିବାରେ ସକ୍ଷମ ହୋଇଥାଆନ୍ତି ।

ସରୀସୃପ କୁଳର କୁମ୍ଭୀର ଓ ମଗର ମାତାର ସନ୍ତାନ ପ୍ରତି ସ୍ନେହ ଓ ଲାଳନ କ୍ଷମତା ଅନ୍ୟ ଯେ କୌଣସି ଉଚ୍ଚତର ପ୍ରାଣୀର ସମତୁଲ୍ୟ । ଅଣ୍ଡା ଦେଇ ସାରିବା ପରେ କୁମ୍ଭୀର ମା' କଅଁଳମାଟି ଓ ଶୁଖିଲା ପତ୍ର ଆଦି ସାହାଯ୍ୟରେ ଅଣ୍ଡାଗୁଡ଼ିକୁ ଘୋଡ଼ାଇ ଦିଏ ଓ ଏହା ମଧ୍ୟରେ ଅଣ୍ଡାଗୁଡ଼ିକୁ ଜଗି ବସିରୁହେ । ଅଣ୍ଡା ଫୁଟି ଛୁଆ ବାହାରିବାର ସମୟ ହେଲେ ଛୁଆମାନେ ଅଣ୍ଡା ଭିତରେ 'ରଟ' 'ରଟ' ଶବ୍ଦ କରନ୍ତି । ଶବ୍ଦ ଶୁଣି ମା' ଅଣ୍ଡା ଉପରୁ ମାଟି ପତ୍ର ଆଦିକୁ ଆଡ଼େଇ ଦିଏ, ଅଣ୍ଡା ଫାଟି ନଥିଲେ ତାହାକୁ ଫଟେଇ ଦିଏ । ଏହାପରେ ମା' ବତକ ଯେଉଁଭଳି ତା ଛୁଆମାନଙ୍କୁ ପାଣିକୁ ନେଇଯାଏ, ମା' କୁମ୍ଭୀର ଠିକ୍ ସେଇଭଳି ଛୁଆମାନଙ୍କୁ ଏକାଠି କରି ପାଣିକୁ ନେଇଯାଏ । ସନ୍ତାନ ଲାଳନରେ ବିହଙ୍ଗ ସରୀସୃପଠାରୁ ଆଉ ଗୋଟିଏ ଧାପ ଆଗେଇ ଯାଇଛି । ବିହଙ୍ଗର ବସା ତିଆରି, ପ୍ରେମ ସଙ୍ଗୀତ ସର୍ବୋପରି ନିଜ ପରିବାର ପାଇଁ ଆତ୍ମତ୍ୟାଗ ଦେଖିଲେ ଧାରଣା କରିବା କଷ୍ଟ । ଏକଦା ବିହଙ୍ଗର ପୂର୍ବପୁରୁଷ ଥିଲେ ସରୀସୃପ ?



ପ୍ରଜାପ ମୁଦୁଷାଙ୍ଗ ନାମ କୁମ୍ଭୀର

# ଚଢ଼େଇ କାହିଁକି ଗୀତ ଗାଏ ?

ପୃଥିବୀକୁ ବିହଙ୍ଗର ଆଗମନ ଏକ ପ୍ରତ୍ୟାଶିତ ଘଟଣା । ସେଦିନ ଯେବେ ଏ ପୃଥିବୀ ପୃଷ୍ଠରେ ସରୀସୃପମାନେ ପୂରାଦମ୍‌ରେ ରାଜୁତି କରୁଥିଲେ କେହି କ'ଣ କଳନା କରିଥିଲେ, କିଛି ପ୍ରାକୃତିକ ବିପର୍ଯ୍ୟୟ ସେମାନଙ୍କ ସେଇ ଏକଛତ୍ର ଶାସନକୁ ଦୋହଲେଇ ଦେବ । ସେଇ ସମୟରେ କିଛି ପ୍ରାକୃତିକ ବିପର୍ଯ୍ୟୟ ଯଥା ବାୟୁମଣ୍ଡଳରେ ଅସ୍ଥିରତା, ପୃଥିବୀପୃଷ୍ଠ ତାପମାତ୍ରାର ଘନ ଘନ ପରିବର୍ତ୍ତନ ବିରାଟକାୟ ସରୀସୃପମାନଙ୍କୁ ବ୍ୟତିବ୍ୟସ୍ତ କରି ପକେଇଥିଲା । ଶୀତଳ ରକ୍ତ ବିଶିଷ୍ଟ ଓ ବିରାଟକାୟ ସରୀସୃପ କୁଳ ତାପମାତ୍ରାର ପରିବର୍ତ୍ତନ ସହ ନିଜକୁ ଅଣ୍ଟି ପାରିଲା ନାହିଁ, କେବଳ ଯେଉଁମାନଙ୍କ ଶରୀର ଛୋଟ, ସେମାନେ ମାଟିତଳେ ଅଥବା ପଥର କୋରଡ଼ମାନଙ୍କରେ ରହି ଶୀତ ଓ ଖରା ଦାଉରୁ ନିଜକୁ ରକ୍ଷା କରିପାରିଲେ । ଏହି ସମୟରେ ପରିବର୍ତ୍ତିତ ପରିବେଶ ସହ ମନେଇବା ଆକାଂକ୍ଷାରେ କିଛି ସରୀସୃପଙ୍କ ଶରୀରବୃତ୍ତିୟ ପରିମଣ୍ଡଳରେ ହେଲା ପରିବର୍ତ୍ତନ । ଏହି ପରିବର୍ତ୍ତିତ ପ୍ରାଣୀମାନେ ପରବର୍ତ୍ତୀ ସମୟରେ ହେଲେ, ଉଷ୍ଣରକ୍ତଧାରୀ ବିହଙ୍ଗ ଓ ସ୍ତନ୍ୟପାୟୀ । ଏଣୁ ସରୀସୃପ ବଂଶୋଦ୍ଭବ ବିହଙ୍ଗକୁ ପ୍ରାଣୀବିତ୍‌ମାନେ ଯଥାର୍ଥରେ କହିଛନ୍ତି, "Birds are glorified reptiles" ବିହଙ୍ଗ ଅସଲରେ ଅତି ଉନ୍ନତ ସରୀସୃପ । ଆଜି ଆମେ ଦେଖୁଥିବା ସରୀସୃପ କୁଳର ସାପ, କଇଁଚ, ଏଣ୍ଡୁଅ ସହ ବିହଙ୍ଗର ତୁଳନା କଲେ ମନରେ ସଂଶୟ ହୁଏ, ସତରେ କ'ଣ ଧୀର ମନ୍ଥର କଦାକାର (?) ପ୍ରାଣୀଗୁଡ଼ିକ ଚଳଚଞ୍ଚଳ ସ୍ୱରୂପା ବିହଙ୍ଗର ପୂର୍ବଜ ?



ଉଡ଼ିବା ଅବସ୍ଥାରେ ହମିଂବାର୍ଡ଼ର ଶାବକକୁ ଖାଦ୍ୟ ଦାନ

ନା ଏହା ପ୍ରାଣୀବିଦ୍‌ମାନଙ୍କ ମନଗଢ଼ା ମନ୍ତବ୍ୟ ? ୧୮୬୧ରେ ଆନ୍ଦ୍ରେ ୱାଗନାର ନାମକ ଜଣେ ଜର୍ମାନ ବାଭେରିଆରେ ଏକ ଅଦ୍ଭୁତ ଜୀବାଶ୍ମ ପାଇଲେ । ପରବର୍ତ୍ତୀ ସମୟରେ ଜୀବାଶ୍ମଟିର ନାମକରଣ ହେଲା ଆରକିଓପଟେରିକ୍ସ ଲିଥୋଗ୍ରାଫିକା (Archaeopteryx lithographica) ପ୍ରକୃତିର ବିଚିତ୍ର ଖିଆଲରୁ କୁଆ ପରି ଦେଖିବାକୁ ଆରକିଓପଟେରିକ୍ସ ଉଭୟ ବିହଙ୍ଗ ଓ ସରୀସୃପର ବିଭିନ୍ନ ଚରିତ୍ର ଗୋଳିଆମିଶା ହୋଇ ବହନ କରିଥିଲା । ଅର୍ଥାତ୍ ଆରକିଓପଟେରିକ୍ସ ଥିଲା ସେଇ ପ୍ରାଣୀମାନଙ୍କ ଭିତରୁ ଜଣେ ଯିଏ ସରିସୃପ ଓ ବିହଙ୍ଗର ସଂଯୋଜନକାରୀ ବା (Connecting Link) । ଏଥର ପ୍ରାଣୀବିଦ୍‌ମାନେ ହଲପ କରି କହିଲେ ସରୀସୃପ ହିଁ ବିହଙ୍ଗର ପୂର୍ବଜ ।

ସେଦିନ ବିରାଟକାୟ ଡାଇନୋସରସ, କ୍ଷିପ୍ର ବୁଦ୍ଧିମାନ ପ୍ରାଚୀନ ସ୍ତନ୍ୟପାୟୀମାନଙ୍କ ଗହଣରେ ବିହଙ୍ଗ ହୁଏତ ଅନୁଭବ କରିଥିଲା ଜଳରେ ତା'ର ସ୍ଥାନ ନାହିଁ । କାରଣ ସେଠାରେ ମାଛର ରାଜୁତି, ସ୍ଥଳରେ ବହୁ ପ୍ରାଣୀଙ୍କ ସମାବେଶ କେବଳ ଗୋଟିଏ ମାତ୍ର ସ୍ଥାନ ତା ପାଇଁ ରହିଛି ତାହା ହେଉଛି ସୀମାହୀନ ଆକାଶ । ସେ ଆକାଶକୁ ଅନେଇଲା ଧୀରେ ଧୀରେ ନିଜର ସମସ୍ତ ଶକ୍ତିକୁ ନିୟୋଜିତ କରି ଆକାଶକୁ ଜିଣିଲା । ଚଉଦ କୋଟି ବର୍ଷର ପ୍ରଚେଷ୍ଟା ସେଥିସଙ୍ଗେ ପ୍ରକୃତିର ସହାୟତା ଫଳରେ ବିହଙ୍ଗ ଆଦି ତ୍ରୁଟିହୀନ ନଭୋଚାରୀଟିଏ ହୋଇପାରିଛି- ଏବେ ମଧ ତା'ର ସେଇ ଚେଷ୍ଟାରେ ଶେଷ ନାହିଁ । ଏଥିପାଇଁ ସେ ଶରୀରର ଓଜନ କମେଇଛି, ଦୁଇ ଗୋଡ଼ରେ ଶରୀରର ଭାରସାମ୍ୟ ରଖି ହାତ ଦୁଇଟିକୁ ଡେଣା ହିସାବରେ ବ୍ୟବହାର କରିଛି, ମୂତ୍ରାଶୟ ଆଦି ବାହୁଲ୍ୟ ଅଙ୍ଗକୁ ସଯତ୍ନରେ ତ୍ୟାଗ କରିଛି । ଖାଦ୍ୟରେ ବାଛ ବିଚାର କରିନାହିଁ । ମରୁଭୂମି ହେଉ କିମ୍ବା ଜଳାଶୟ ବା ପର୍ବତ ଶିଖର ହେଉ ଅଥବା ବେଳାଭୂମି ସବୁଠି ସବୁ ପରିବେଶରେ ନିଜକୁ ସେ ମନେଇଛି । ଦଳବଦ୍ଧ ରହି ପ୍ରତିକୂଳ ପରିବେଶର ମୁକାବିଲା କରିଛି । ଯୋଗାଯୋଗ (?) ପାଇଁ ଶବ୍ଦ ଉତ୍‌କ୍ଷେପଣ କରିଛି ବା ଗୀତ ଗାଇଛି । ଗୀତ ଗାଇବା ପାଇଁ ତା'ର ରହିଛି ଏକ ବିଶେଷ ଧରଣର ସ୍ୱରପେଟିକା ସିରିନ୍‌କ୍ସ (Syrinx) । ଏହି ସିରିନ୍‌କ୍ସର ଗଠନ ଓ କାର୍ଯ୍ୟକାରୀତା ସ୍ତନ୍ୟପାୟୀର ସ୍ୱରପେଟିକାଠାରୁ ସମ୍ପୂର୍ଣ୍ଣ ଭିନ୍ନ ।

ଏ କଥା ନିଶ୍ଚିତ ପୃଥିବୀରେ ଯଦି ବିହଙ୍ଗ ନ ଥାଆନ୍ତା ତେବେ ପ୍ରକୃତିର ଶବ୍ଦ ଭଣ୍ଡାରରେ ମଧୁରତମ ଶବ୍ଦଟିର ସୃଷ୍ଟି ହୋଇ ନଥାନ୍ତା । ଅନେକ ପକ୍ଷୀ ବିଶାରଦ କହନ୍ତି ବିହଙ୍ଗର ସଙ୍ଗୀତ ହେଉଛି 'ଆନନ୍ଦ ସଙ୍ଗୀତ' ଭଲ ପାଗ, ମନମୁତାବକ ବନ୍ଧୁଟିଏ ପାଖରେ ଥିଲେ ସେମାନେ ମତୁଆଲା ହୁଅନ୍ତି ଓ ଆନନ୍ଦରେ ଗୀତ ଗାଆନ୍ତି । ଏ କଥା ନିଶ୍ଚିତ ପକ୍ଷୀର ଗୀତ କେବଳ ଏକ ନିର୍ଦ୍ଦିଷ୍ଟ ଶବ୍ଦ ତରଙ୍ଗର ପୁନଃ ଉତ୍‌କ୍ଷେପଣ ନୁହେଁ । ବିହଙ୍ଗର ସଙ୍ଗୀତ ପ୍ରଧାନତଃ ଦୁଇ ପ୍ରକାରର । ନିମନ୍ତ୍ରଣ ସଙ୍ଗୀତ (Call note) ଏବଂ ଆନନ୍ଦ ସଙ୍ଗୀତ (True note) । ନିମନ୍ତ୍ରଣ ସଙ୍ଗୀତ ପକ୍ଷୀ ଜନ୍ମ ସୂତ୍ରରେ ତା'ର ପିତା-ମାତାଙ୍କଠାରୁ ପାଇଥାଏ, ମାତ୍ର ଆନନ୍ଦ ସଙ୍ଗୀତ ସେ କିଛି ଜନ୍ମସୂତ୍ରରେ ଓ କିଛି ତା'ର ପରିବେଶରୁ ଶିକ୍ଷା କରିଥାଏ । ପଞ୍ଜୁରୀରେ ଶାରୀ ବା କାକତୁଆ ଯେବେ ହରେକୃଷ୍ଣ ବା ରାମ ରାମ କରେ ତାହା ସେ ପରିବେଶରୁ ହିଁ ଶିକ୍ଷା କରିଥାଏ । ଏହା ଆନନ୍ଦସଙ୍ଗୀତର ରୂପାନ୍ତର ମାତ୍ର । ନିମନ୍ତ୍ରଣ ସଙ୍ଗୀତର ଉଦ୍ଦେଶ୍ୟ ବିବିଧ । ଏହି ସଙ୍ଗୀତ ଦ୍ୱାରା ବିହଙ୍ଗ ନିଜର ଉପସ୍ଥିତି ଓ ନିଜ

ରମଣ ଇଲାକା ଅନ୍ୟ ସ୍ୱଜାତୀୟ ପ୍ରତିଦ୍ୱନ୍ଦୀଙ୍କୁ ଜଣେଇ ଦିଏ । ଏହି ପ୍ରସଙ୍ଗରେ ବାର୍ଣ୍ଣାଡ୍ ଆଲଟମ ତାଙ୍କର ବହି "The life of bird"ରେ ଲେଖିଲେ "Only birds that have a breeding territory can sing well" ଅର୍ଥାତ୍ ଯେଉଁ ବିହଙ୍ଗର ଏକ ରମଣ ଇଲାକା ରହିଛି ସେ ଅନ୍ୟ ଅପେକ୍ଷା ଭଲ ଗୀତ ଗାଏ । ପୁରୁଷ ବିହଙ୍ଗ ନିଜ ଇଲାକା ସମ୍ବନ୍ଧରେ ଅତ୍ୟଧିକ ସଚେତନ, ସଙ୍ଗୀତ ତା'ର ପୌରୁଷର ଚିହ୍ନ । ସଙ୍ଗୀତ ସାହାଯ୍ୟରେ ସେ ଜଣେଇ ଦିଏ "ଏହା ମୋର ଇଲାକା, ଏଠାରେ କାହାରି ଅନୁପ୍ରବେଶ ମୁଁ ପସନ୍ଦ କରେ ନାହିଁ ।" ଡ଼େଭିଡ଼ ଲ୍ୟାକ ନାମକ ଏକ ପକ୍ଷୀବିଶାରଦ ଦୁଇଟି ସଙ୍ଗୀତଜ୍ଞ ରବିନ୍ ଚଢ଼େଇ ନେଇ ଏକ ସୁନ୍ଦର ପରୀକ୍ଷା କଲେ । ପ୍ରତ୍ୟେକ ପୁରୁଷ ରବିନର ନିଜସ୍ୱ ରମଣ ଇଲାକା ରହିଛି । ଲ୍ୟାକ ଗୋଟିଏ ପୁରୁଷ ରବିନ୍‌କୁ ପଞ୍ଜୁରୀରେ ପୁରେଇ ତା'ର ନିଜସ୍ୱ ଇଲାକା ମଧ୍ୟରେ ଥୋଇଲେ, କିଛି ସମୟ ପରେ ନିକଟବର୍ତ୍ତୀ ଇଲାକାରୁ ଅନ୍ୟ ଏକ ପୁରୁଷ ରବିନ ଯେମିତି ସେଠାରେ ପହଞ୍ଚିଛି, ପଞ୍ଜୁରୀ ମଧ୍ୟରେ ଥିବା ରବିନ୍‌ଟି ପରିତ୍ରାହି ଚିତ୍କାର ଆରମ୍ଭ କଲା । ତା'ର ସେ ଚିତ୍କାରରେ ଅନ୍ୟ ରବିନ୍‌ଟି ସେଠାରୁ ପଳେଇଲା । ଏହାପରେ ଲ୍ୟାକ୍ ପଞ୍ଜୁରୀସ୍ଥ ରବିନ୍‌ଟିକୁ ଅନ୍ୟ ପୁରୁଷର ଇଲାକାରେ ରଖିଲେ, ଲ୍ୟାକ୍ ଲକ୍ଷ୍ୟ କଲେ ପଞ୍ଜୁରୀସ୍ଥ ରବିନ୍‌ଟି ଏବେ ଚୁପ୍ ରହିଛି । ମାତ୍ର ବାହାରର ଅନ୍ୟ ରବିନ୍ ଟି ଚିତ୍କାର ଆରମ୍ଭ କରିଛି ।

ଗୀତ ଗାଉଥିବା ପକ୍ଷୀମାନଙ୍କ ଭିତରୁ ଅଧିକାଂଶ ଏକ ଦାର ପ୍ରିୟ । ବର୍ଷର ଅନ୍ୟ ସମୟରେ ପୁରୁଷ ଅନ୍ୟ ସ୍ତ୍ରୀ ଗହଣରେ ରହିଲେ ମଧ୍ୟ ମିଳନ ଋତୁର ପ୍ରାରମ୍ଭରୁ ନିଜ ସ୍ତ୍ରୀ ପ୍ରତି ଅନୁଗତ ହୋଇଥାଏ । ଏହି ସମୟରେ ବିହଙ୍ଗ ଦମ୍ପତି ଅନ୍ୟମାନଙ୍କ ଉପସ୍ଥିତି ସହ୍ୟ କରିପାରନ୍ତି ନାହିଁ । ପୁରୁଷ ଚଢ଼େଇର ପରିଚୟ ଏକ ଅନୁଗତ ସ୍ୱାମୀ ବା ଏକ ସ୍ନେହପ୍ରବଣ ପିତା ରୂପରେ ଯାହା ହେଉନା କାହିଁକି, ଦ୍ୱନ୍ଦ ଯୁଦ୍ଧରେ ସେ କେଭେ ହେଲେ ପଛ ପା ହୁଏ ନାହିଁ । ସମଗୋତ୍ରୀୟ ପୁରୁଷକୁ ସମ୍ମୁଖ ସମରରେ ପରାସ୍ତ କରି ବୀରଦର୍ପରେ ପୁରୁଷ ଯେବେ ତା'ର ପ୍ରିୟା ନିକଟରେ ପ୍ରେମ ନିବେଦନ କରେ, ସେତେବେଳେ ଦୁହିଁଙ୍କ ଭିତରେ ଯେଉଁ ଶବ୍ଦର ଆଦାନ ପ୍ରଦାନ ହୁଏ ତାହାର ଯଦି ମର୍ମ ଉଦ୍ଧାର କରି ହୁଅନ୍ତା ତେବେ ତାହା ଅନେକ ମଧ୍ୟଯୁଗୀୟ ପ୍ରଣୟଗାଥାକୁ ନଶ୍ୟାତ୍ କରି ଦିଅନ୍ତା । ମିଳନ ଋତୁରେ ବଣରେ ଦୁଇଟି ଗଞ୍ଜା ଯେବେ ପରସ୍ପରକୁ ଭେଟନ୍ତି, ପ୍ରଥମେ ଏକ ଅନ୍ୟକୁ ଏକା ନିଘାରେ କିଛି ସମୟ ଅନେଇ ରୁହନ୍ତି । ସତେ ଅବା ସ୍ଥିର କରନ୍ତି କେଉଁ ପଟୁ ଆକ୍ରମଣ କଲେ ପ୍ରତିପକ୍ଷକୁ ସହଜରେ ଧରାଶାୟୀ କରିହେବ । ଏହାପରେ ସିଂହର କେଶର ଫୁଲିଲା ପରି ଉଭୟଙ୍କ ବେକ ଚାରିପଟ ପର ଧୀରେ ଧୀରେ ଫୁଲି ଉଠେ । ଯୁଦ୍ଧ ଡାକରା ଦେବା ପୂର୍ବରୁ ଉଭୟ ଛୋଟ ଛୋଟ ଶବ୍ଦ କରି ଚକ୍ରାକାରରେ ବୁଲନ୍ତି, ତା'ପରେ ହୁଙ୍କାର ଛାଡ଼ି ଓ ସେଥି ସଙ୍ଗେ ଦୁଇ ତିନି ଫୁଟ ଡେଇଁ ଏକ ଅନ୍ୟକୁ ଥଣ୍ଟ ଓ ନଖ ସାହାଯ୍ୟରେ ଆକ୍ରମଣ କରନ୍ତି । ଏଇ ଲଢ଼େଇ ଦୁଇ ତିନି ଘଣ୍ଟା ଚାଲେ, ଶେଷରେ ପରାଜିତ ସେ ସ୍ଥାନ ତ୍ୟାଗ କରି ଚାଲିଯାଏ । ପୁରୁଷଙ୍କ ଏହି ଦ୍ୱନ୍ଦ ବେଳେ ସ୍ତ୍ରୀ ନିକଟରେ ରହି ଛୋଟ ଛୋଟ ଶବ୍ଦ ସାହାଯ୍ୟରେ ନିଜର ଉପସ୍ଥିତି ଜଣେଇ ଦିଏ । ଦ୍ୱନ୍ଦ ଯୁଦ୍ଧ, ପୂର୍ବରାଗ ଆଦି ପର୍ବ ପରେ ଉଭୟ ସ୍ତ୍ରୀ ଓ ପୁରୁଷ ବସା ନିର୍ମାଣରେ ମନ ଦିଅନ୍ତି । ବସା ନିର୍ମାଣରେ ଚଢ଼େଇ ଅହେତୁକ ଆଡମ୍ବରକାରୀ । ବସା ନିର୍ମାଣ ବେଳେ ପୁରୁଷ ବେଳେ ବେଳେ ପୂର୍ବଭଳି ଚିତ୍କାର କରେ ହୁଏତ କୁହେ "ବହୁତ ହେଲା ଆଉ କାହିଁକି ?" ଏଥର ସ୍ତ୍ରୀ ମୃଦୁ ସ୍ୱରରେ କୁହେ "ସ୍ଥିର

ହୁଅ ।''

ଏହା ନିଶ୍ଚିତ ଚଢ଼େଇର ଗୀତ ଏବଂ ତା'ର ମିଳନ ଇଚ୍ଛା ଭିତରେ ଏକ ସମ୍ବନ୍ଧ ରହିଛି । ଯେଉଁ ସମୟରେ ଜନନ ସମ୍ପର୍କୀୟ ଅନ୍ତଃକ୍ଷରଣ ଗ୍ରନ୍ଥିରୁ ହରମୋନ (Sex Hormone) ନିସୃତ ହୁଏ, ସେଇ ସମୟରେ ସଙ୍ଗୀତଜ୍ଞ ପକ୍ଷୀର ଗୀତ ପ୍ରକଟ ହୁଏ । ବର୍ଷର ଏକ ନିର୍ଦ୍ଦିଷ୍ଟ ସମୟରେ ବିହଙ୍ଗର ଜନନାଙ୍ଗର ବୃଦ୍ଧି ହୁଏ ଓ ସେଥି ସଙ୍ଗେ ବିଭିନ୍ନ ଅନ୍ତଃକ୍ଷରଣ ଗ୍ରନ୍ଥିଗୁଡ଼ିକ ସକ୍ରିୟ ହୁଏ । ଅନ୍ୟ ସମୟରେ ଜନନାଙ୍ଗଗୁଡ଼ିକ ସଙ୍କୁଚିତ ହୋଇ ରହିଥାଏ ।

ଜନନ ସମ୍ପର୍କୀୟ ଅନ୍ତଃକ୍ଷରଣ ଗ୍ରନ୍ଥିରୁ ନିସୃତ ବିଭିନ୍ନ ହରମୋନ ଚଢ଼େଇର ପର ଓ ରଙ୍ଗକୁ ମଧ୍ୟ ନିୟନ୍ତ୍ରଣ କରିଥାଏ । କୁକୁଡ଼ା ଉପରେ ବିଭିନ୍ନ ପରୀକ୍ଷାମାନ ହୋଇ ଦେଖାଯାଇଛି ଯଦି ଗୋଟିଏ ଗଞ୍ଜାକୁ ନପୁଂସକ କରିଦିଆଯାଏ ତେବେ ତାହାର ପର ରଙ୍ଗର ଦୀପ୍ତି ନଷ୍ଟ ହୁଏ ନାହିଁ । ମାତ୍ର କୁକ୍କୁଟୀର ଗର୍ଭାଶୟ ଯଦି କାଟି ଦିଆଯାଏ, ତେବେ ଅତି ଶୀଘ୍ର କୁକ୍କୁଟୀ ପରରେ ଗଞ୍ଜା ପରର ଔଜ୍ଜଲ୍ୟ ପ୍ରକାଶ ପାଏ । ଜନନାଙ୍ଗ ବିହୀନ କୁକ୍କୁଟୀର ପରରେ ଔଜ୍ଜଲ୍ୟ ପ୍ରକାଶ ପାଇବାର କାରଣ ଗର୍ଭାଶୟରୁ ନିସୃତ ହରମୋନ ସ୍ତ୍ରୀ ଚଢ଼େଇର ଔଜ୍ଜଲ୍ୟକୁ ପ୍ରତିହତ କରେ । ପ୍ରକୃତିର ଏଭଳି ବ୍ୟବସ୍ଥାର କାରଣ ଆଜି ମଧ୍ୟ ଏକ ପ୍ରଶ୍ନବାଚୀ ହୋଇପାରେ । ପୁରୁଷ ପକ୍ଷୀ ସ୍ତ୍ରୀର ସାଦାସିଧା ହାଲୁକା ନରମ ରଙ୍ଗକୁ ଅଧିକ ପସନ୍ଦ କରେ, ଅପର ପକ୍ଷରେ ସ୍ତ୍ରୀ ଚଢ଼େଇ ପୁରୁଷର ଉଜ୍ଜ୍ୱଳ ରଙ୍ଗ ପ୍ରତି ଅଧିକ ଆକୃଷ୍ଟ ହୁଏ ।

ପୁରୁଷ ମୟୂର ପୁଚ୍ଛର ଉଜ୍ଜ୍ୱଳତା ଏବଂ ସେଥିସଙ୍ଗେ କେକା ଧ୍ୱନୀର ତୁଳନା ବିହଙ୍ଗ କୁଳର ଅନ୍ୟ କୌଣସି ଚଢ଼େଇଠି ଦେଖାଯାଏ ନାହିଁ । ବିରାଟ ପୁଚ୍ଛ ପାଇଁ ପୁରୁଷ ମୟୂର ଭଲ କରି ଉଡ଼ି ପାରେ ନାହିଁ, ତଥାପି ପୁଚ୍ଛ ହିଁ ତା'ର ପୌରୁଷ । ମୟୂର ଯେବେ ପୁଚ୍ଛ ଉତ୍ତୋଳନ କରେ, ମୟୂରୀ, ପୁରୁଷ ଚାରିପଟେ ବୁଲି ବୁଲି ସେ ସୌନ୍ଦର୍ଯ୍ୟ ଉପଭୋଗ କରେ । ଏହି ସମୟରେ ପୁରୁଷ ମୟୂର ବାରମ୍ବାର ପୁଚ୍ଛକୁ ଥରେଇ ମୟୂରୀର ଦୃଷ୍ଟି ଆକର୍ଷଣ କରେ । ଉପଯୁକ୍ତ ପାଗରେ ମୟୂର ମୟୂରୀର ପୂର୍ବରାଗ ନୃତ୍ୟ ବେଶ କିଛି ସମୟ ଧରି ଚାଲେ । ପରେ ମୟୂରୀଠୁ ସମ୍ମତି ପାଇଲେ ମୟୂର ପୁଚ୍ଛ ଢାକି ମୟୂରୀ ସହ ମିଳିତ ହୁଏ ।

ମୟୂର ପରି ଆହୁରି ଅନେକ ଚଢ଼େଇର ପୁରୁଷ କେବଳ ସ୍ତ୍ରୀର ମନ ତୋଷିବା ରଙ୍ଗ ବେରଙ୍ଗ ପର ପୁଚ୍ଛ ଆଦି ବହନ କରେ । ଏହି ସମସ୍ତ ପକ୍ଷୀମାନଙ୍କରେ ସ୍ତ୍ରୀର ଇଚ୍ଛା ହିଁ ଶେଷକଥା । ଡାରଉଇନ ଏଇ ବାଛିବା ପ୍ରଣାଳୀକୁ କହିଛନ୍ତି "Ladies Choice" ଦକ୍ଷିଣ ଆମେରିକାରେ ମିଳୁଥିବା କୁକୁଡ଼ା ଜାତୀୟ "Stone Grouse"ର ପୁରୁଷମାନେ ନିଜ ରଙ୍ଗ ବେରଙ୍ଗର ଛୋଟ ପୁଚ୍ଛ ଟେକି ସ୍ତ୍ରୀ ସମ୍ମୁଖରେ ପ୍ୟାରେଡ଼ କଲା ପରି ଚାଲନ୍ତି ସତେ ଅବା ଏକ ସ୍ୱୟମ୍ବର । ପୁରୁଷର ଚାଲି ଓ ତା'ର ଢ଼ଙ୍ଗ ଢ଼ାଙ୍ଗ ଦେଖି ସ୍ତ୍ରୀ ସେମାନଙ୍କ ଭିତରୁ ତା'ର ମନଲାଖି ପାତ୍ରଟିଏ ବାଛିଥାଏ । ଏଇ ପଦ୍ଧତି ଏବେ ହେଉଥିବା ସୌନ୍ଦର୍ଯ୍ୟ ପ୍ରତିଯୋଗୀତା ପରି । ପାର୍ଥକ୍ୟ କେବଳ ମଣିଷ କ୍ଷେତ୍ରରେ ସ୍ତ୍ରୀ ବିଭିନ୍ନ ପୋଷାକରେ ସଜ୍ଜିତ ହୋଇ ନିଜକୁ ଉପସ୍ଥାପନ କରେ ଓ ପୁରୁଷ ତାଙ୍କ ଭିତରୁ ବିଶ୍ୱସୁନ୍ଦରୀ ବାଛିଥାଏ ।

# ପେଙ୍ଗୁଇନ୍‌ର ସାଂସାରିକ ଭୋଗ ବିଳାସ

ବିହଙ୍ଗର କ'ଣ ନାନ୍ଦନିକ ବୋଧ ଅଛି ? ସେ କ'ଣ ସୌନ୍ଦର୍ଯ୍ୟ ପିପାସୁ । ଉତ୍ତରରେ ଡାରଉଇନ କହିଥିଲେ, ପକ୍ଷୀମାନଙ୍କର ଏକ ସୂକ୍ଷ୍ମ ସୌନ୍ଦର୍ଯ୍ୟବୋଧ ରହିଛି । ଏହି କାରଣ ଲାଗି ମୟୁର ପୁଚ୍ଛ ଟେକି ନାଚୁଛି, ବାରମାସୀ ଚଢ଼େଇ ରଙ୍ଗ ବଦଳଉଛି । ଉଜ୍ଜ୍ୱଳ ରଙ୍ଗ ପାଇଁ ଅନେକ ଚଢ଼େଇ ଶୀକାର ହାବୁଡ଼ରେ ପଡୁଛନ୍ତି ତଥାପି ରଙ୍ଗ ବେରଙ୍ଗର ପରର ମୋହ ସେ କ'ଣ ଛାଡ଼ିପାରୁଛି ? ଛାଡ଼ିବ ବା କେମିତି ଉଜ୍ଜ୍ୱଳ ରଙ୍ଗ ପାଇଁ ତ ସେ ତା'ର ପ୍ରିୟାର ମନ ତୋଷି ପାରୁଛି । ନିଜକୁ ପ୍ରକଟିତ କରି ପ୍ରିୟା ଦ୍ୱାରା ମନୋନୀତ ହେବାର ପ୍ରଣାଳୀକୁ ଡାରଉଇନ କହିଥିଲେ ସେକ୍ସୁଆଲ ସିଲେକ୍‌ସନ (Sexual Selection) କେବଳ ରଙ୍ଗ ନୁହେଁ ଆହୁରି ଅନେକ ଉପାୟରେ ପ୍ରେମିକ ତା'ର ପ୍ରେମିକାର ମନ ନେଇଥାଏ । ଅଷ୍ଟ୍ରେଲିଆରେ ଦେଖାଯାଉଥିବା କପୋତ ଧରଣର ଏକ ଜାତୀୟ ପକ୍ଷୀ ନିଜ କୁଟୀର ପରିଚୟେ ତା'ର ପ୍ରିୟାକୁ ଦିଏ ଘରର ସାଜସଜ୍ଜା ଦେଖାଇ । ମିଳନ ପୂର୍ବରୁ ବାଓର (Bower) ପକ୍ଷୀର ପୁରୁଷ କାଠି କୁଟାରେ ଛୋଟ କୁଡ଼ିଆଟିଏ ବନାଏ । କୁଡ଼ିଆଟିକୁ ଦୂରରୁ ଦେଖିଲେ ମନେହୁଏ ଏକ ତୋରଣ ଯାହାର ପଛକୁ ରହିଛି ଏକ ପ୍ରାସାଦ । କୁଡ଼ିଆ ତିଆରି ସାଙ୍ଗକୁ ତା'ର ଚଟାଣ ଉପରେ ସେ ନରମ ଘାସର ଏକ ଗାଲିଚା ପାରି ଦିଏ । ଏହାପରେ ପାଟିରୁ ଅଠାଳିଆ ରସ ବାହାର କରି କୁଡ଼ିଆଟିକୁ ବିଭିନ୍ନ ଫୁଲର ପାଖୁଡ଼ା ଦ୍ୱାରା ସଜେଇ ଦିଏ । ଘର ତିଆରି ସରିଗଲେ ପୁରୁଷ ଘର ଆଗ ବାଲୁଲିରେ ଛୋଟ ଛୋଟ ବାଲିଗରଡ଼ା ନେଇ ସଜେଇ ଦିଏ । କୁଡ଼ିଆ ଓ ଅଗଣା ଆଦି ତିଆରି କରିବାରେ ପୁରୁଷ କପୋତଟିକୁ ପ୍ରାୟ ଚାରି ପାଞ୍ଚ ସପ୍ତାହ ସମୟ ଲାଗିଯାଏ । ବେଳେ ବେଳେ ସମସ୍ତ କାମ ସରିଗଲା ପରେ କପୋତଟିର ମନ ହୁଏ "ନାଁ ଠିକ୍ ହେଲା ନାହିଁ", ସେତେବେଳେ ସେ ପୁଣି ନୂତନ ଉଦ୍ୟମରେ ଘର ଭିତର କାନ୍ଥ ଓ ବାହାରେ ଲଗା ହୋଇଥିବା ପତ୍ର ପାଖୁଡ଼ା ଆଦିକୁ ବଦଳ କରି ଘରର ଏକ ନୂତନ ରୂପ ଦିଏ ।

ମନ ମୁତାବକ ଘରଟିଏ ହୋଇଗଲେ ପୁରୁଷ ଯୋରରେ ସୁସୁରି ବଜେଇ ସ୍ତ୍ରୀକୁ ଆହ୍ୱାନ କରେ । ଏହି ଅବସରରେ ପୁରୁଷ ଘର ସାମନାରେ ପାଆଚାରୀ କଲାପରି ଏଣେ ତେଣେ ଅନେଇ ସ୍ତ୍ରୀକୁ ଅପେକ୍ଷା କରେ । ନିମନ୍ତ୍ରଣ ପାଇ ସ୍ତ୍ରୀ ଯେବେ ଘର ଓ ଅଗଣା ପରିଦର୍ଶନ କରେ ପୁରୁଷ ପଦାରେ ଅପେକ୍ଷା କରେ । ଘର ଓ ଅଗଣା ସ୍ତ୍ରୀର ପସନ୍ଦ ହେଲେ ସେ ନାଚି ନାଚି ତା'ର ସମ୍ମତି ଜଣାଏ । ପରେ ଉଭୟ ଦୀର୍ଘ ସମୟ ନାଚି ନାଚି ମନ ଦିଆ ନିଆ ସାରନ୍ତି ଓ ମିଳିତ ହୁଅନ୍ତି ।

ଅନେକ ଗ୍ରୀସିୟ ପୌରାଣିକ ଗାଥାରେ ସାରସ ସାରସୀର ବିବାହ ବନ୍ଧନକୁ ଆଦର୍ଶ ବିବାହର ଦୃଷ୍ଟାନ୍ତ ରୂପେ ବର୍ଣ୍ଣନା କରାହୋଇଛି । ମନରେ ପ୍ରଶ୍ନ ହୁଏ କ'ଣ ଦେଖି ଗ୍ରୀକ୍ କଥାକାରମାନେ ସାରସ ସାରସୀର ମିଳନକୁ ଆଦର୍ଶ ବନ୍ଧନ ରୂପେ ବାଛିଛନ୍ତି । ସାରସ ସାରସୀର



ସମ୍ରାଟ୍ ପେଙ୍ଗୁଇନ୍

ପରସ୍ପର ପ୍ରତି ଆନୁଗତ୍ୟ ଦେଖି ଅଥବା ବ୍ୟଭିଚାରୀଣୀ ସ୍ତ୍ରୀ ପ୍ରତି ସାରସର ବିଚାର ଦେଖି ? ବାସ୍ତବରେ ସାରସୀ ପତିପ୍ରାଣା ନୁହେଁ କିମ୍ବା ସାରସ ମଧ୍ୟ ଏକ ଦାରାପ୍ରିୟ ନୁହେଁ । ଗ୍ରୀକ୍‌ମାନେ ଯାହା ଦେଖିଥିଲେ ତାହା ଏକ ଭୁଲ ପର୍ଯ୍ୟବେକ୍ଷଣ ଉପରେ ଆଧାରିତ । ସୁଦୂର ସାଇବେରିଆରୁ ସାରସୀ ଅଣ୍ଡା ଦେବା ଲାଗି ଗ୍ରୀସ୍ ଦେଶକୁ ଆସିଥାଏ । ଏହି ସମୟରେ ପ୍ରଥମେ ସାରସ ଆସି ପହଞ୍ଚେ ଏବଂ ବସା ଠିକ୍ କରେ; ପରେ ସାରସୀ ଆସି ସାରସ ସହ ଯୋଗଦିଏ । ଏହି ସମୟରେ ସାରସ କୌଣସି ନିର୍ଦ୍ଦିଷ୍ଟ ପ୍ରିୟାକୁ ସଙ୍ଗ ଦାନ କରେ ନାହିଁ । ଅସଲରେ ପ୍ରଥମେ ଯିଏ ଆସି ପହଞ୍ଚିଲା

ସାରସ ତାକୁ ହିଁ ସଙ୍ଗ ଦେଇ ସମ୍ମାନିତ କରିଥାଏ । ପୂର୍ବେ ଯେଉଁମାନେ ସାରସର ବ୍ୟବହାର ଲକ୍ଷ୍ୟ କରିଥିଲେ ସେମାନେ ଭାବିଥିଲେ ଏକ ନିର୍ଦ୍ଦିଷ୍ଟ ସାରସ ଓ ସାରସୀ ପ୍ରତିବର୍ଷ ପରସ୍ପର ପ୍ରତି ଆନୁଗତ୍ୟ ରଖି ନିର୍ଦ୍ଦିଷ୍ଟ ସ୍ଥାନରେ ବସା ବାନ୍ଧୁଛନ୍ତି, ଏହା ସାଙ୍ଗକୁ ସେମାନେ ଦେଖିଥିଲେ ବେଳେ ବେଳେ ଦଳର ଅନେକ ସାରସ ମିଳମିଶି ଗୋଟିଏ ସାରସୀକୁ ଖୁମ୍ପି ଖୁମ୍ପି ମାରି ପକଉଛନ୍ତି । କ'ଣ ପାଇଁ ସେମାନେ ଏଭଳି କରୁଛନ୍ତି ସେତେବେଳେ ସେମାନଙ୍କୁ ଜଣା ନଥିଲା । ସେମାନେ ଭାବିଥିଲେ ବୋଧହୁଏ ବ୍ୟଭିଚାରିଣୀର ଶାସ୍ତି ହେଉଛି । ୧୮୯୮ ଖ୍ରୀଷ୍ଟାବ୍ଦରେ ଡ଼େନ୍‌ମାର୍କର ଏକ ସ୍କୁଲ ଶିକ୍ଷକ ହାନ୍ସ କ୍ରିଷ୍ଟିୟାନ କର୍ଣ୍ଣେଲିଅସ ଦେଶାନ୍ତର ଯାତ୍ରା କରୁଥିବା ପକ୍ଷୀମାନଙ୍କୁ ଚିହ୍ନିବା ପାଇଁ ଏକ ନୂତନ ଉପାୟ ସ୍ଥିର କଲେ । ସେ ପକ୍ଷୀମାନଙ୍କ ଗୋଡ଼ରେ ନମ୍ବର ଥିବା ବଳା ପିନ୍ଧେଇ ପରବର୍ଷ ସେମାନଙ୍କୁ ଚିହ୍ନଟ କଲେ । ଏହି ଚିହ୍ନଟ ଫଳରେ ଦେଖାଗଲା ସାରସର ପୂର୍ବ ପ୍ରେମିକ ପ୍ରତି କୌଣସି ଦୁର୍ବଳତା ନାହିଁ । ଯଦି କେବେ ପୂର୍ବ ପ୍ରେମିକ ଆସି ନିଜର ଦାବି ଜଣାଏ ତେବେ ସାରସ ତାକୁ ନ ଚିହ୍ନିଲା ପରି ଏଣେ ତେଣେ ଚାଲିଯାଏ, ହେଲେ ପ୍ରାକ୍ତନ ଏବଂ ବର୍ତ୍ତମାନ ଦୁଇ ପ୍ରେମିକା ମଧ୍ୟରେ ପ୍ରବଳ ବଚସା ହୁଏ । ବଚସା ସାଙ୍ଗକୁ ସେମାନେ ଖୁମ୍ପା ଖୁମ୍ପି ମଧ୍ୟ ହୁଅନ୍ତି । ଶେଷ ପର୍ଯ୍ୟନ୍ତ ପ୍ରାକ୍ତନ ପ୍ରେମିକ ନବାଗତା ପାଖରେ ପରାଜିତ ହୋଇ ସେ ସ୍ଥାନ ତ୍ୟାଗ କରେ । ସାଧାରଣତଃ ଲମ୍ବ ଯାତ୍ରା ପରେ ଯେଉଁମାନେ ଦୁର୍ବଳ ଓ ଅସୁସ୍ଥ ହୋଇପଡ଼ନ୍ତି ଦଳର ନିୟମ ଅନୁସାରେ ଅନ୍ୟମାନେ ତାକୁ ଖୁମ୍ପି ଖୁମ୍ପି ମାରି ପକାନ୍ତି ।

''ତୁହେଁ ଆଜୀବନ ସୁଖରେ ଶାନ୍ତିରେ ରୁହ, ଶତପୁତ୍ରର ଜନନୀ ହୋଇ ତୁମର ଛୋଟ ନୀଡ଼ ଧନ ଜନରେ ପରିପୂର୍ଣ୍ଣ ରହୁ'' ଗୁରୁଜନଙ୍କ ଏହି ଆର୍ଶୀବାଦ ଇଗଲ ଦମ୍ପତି, କେତେକ ପେଚା ଓ କାଉ ଜାତୀୟ କେତେକ ପକ୍ଷୀ ମୁଣ୍ଡ ପାତି ନେଇ ଜୀବନଟା ଯାକ ଏକ ଅନ୍ୟ ପ୍ରତି ଅନୁଗତ ରୁହନ୍ତି । କୁଆର ଯଦି ସଙ୍ଗିନୀ ବିୟୋଗ ହୁଏ ତେବେ ପ୍ରିୟା ବିରହରେ ମାସାଧୀକ କାଳ ସେ ଶୋକ ପାଳନ କରେ । ତା'ପରେ ନୂତନ ବାନ୍ଧବୀଟିଏ ଖୋଜି ନିଏ । କିନ୍ତୁ ଅଧିକାଂଶ କ୍ଷେତ୍ରରେ ସେ ନୂତନ ବାନ୍ଧବୀଟିଏ ପାଇବାରେ ସକ୍ଷମ ହୁଏ ନାହିଁ । ତେଣୁ ବିରହର ଜ୍ୱାଳାରେ ବାକି ଜୀବନଟା ଝୁରି ଝରି ସେ ବିତେଇ ଦିଏ ।

ଏକ ଦାରାପ୍ରିୟ ଏହି ବିହଙ୍ଗମାନଙ୍କ ପୂର୍ବରାଗ ପର୍ବ ବେଳେବେଳେ ଏକ ବର୍ଷ ଯାଏଁ ଲମ୍ବିଥାଏ । ଭଲ ରୂପେ ମନ ଦିଆ ନିଆ ସରିଲେ ତେବେ ଯାଇ ସେମାନେ ଘର ବାନ୍ଧନ୍ତି । ହେମନ୍ତ ଋତୁର ପ୍ରାରମ୍ଭରେ ମାଟିଆ ବତକର ପୂର୍ବରାଗ ଆରମ୍ଭ ହୁଏ । ସମସ୍ତ ଶୀତ ଋତୁଟି ଏକାଠି ବିତେଇବା ପରେ ବସନ୍ତ ଋତୁର ଆରମ୍ଭରେ ସେମାନେ ବିବାହର ବନ୍ଧନରେ ଆବଦ୍ଧ ହୁଅନ୍ତି । ହେମନ୍ତ ଋତୁରେ ପୁରୁଷ ବତକ ପ୍ରଥମେ ମିଳନର ଆଗ୍ରହ ପ୍ରକାଶ କରେ । କାରଣ ଜନନ ସମ୍ବନ୍ଧୀୟ ଅନ୍ତଃକ୍ଷରଣ ଗ୍ରନ୍ଥି ପ୍ରଥମେ ପୁରୁଷଠି ସକ୍ରିୟ ହୁଏ, ପରେ ତାହା ସ୍ତ୍ରୀଠାରେ ସକ୍ରିୟ ହୁଏ । ସ୍ତ୍ରୀଠାରେ ଗ୍ରନ୍ଥି ସକ୍ରିୟ ହେଲା ପରେ ସ୍ତ୍ରୀ ମିଳନରେ ପ୍ରଧାନ ଭୂମିକା ନିଏ । ଏକା ପୋଖରୀରେ ରହୁଥିବା ଯେଉଁ ପୁରୁଷର ସଙ୍ଗୀନୀ ଭାଗ୍ୟ ନାହିଁ ସେମାନେ ଦମ୍ପତିଙ୍କ ପାଇଁ ଏକ ଯନ୍ତ୍ରଣା । ଅଭିଆଡ଼ି ପୁରୁଷ ସୁଯୋଗ ପାଇଲେ ପର ସ୍ତ୍ରୀକୁ ପ୍ରେମ ନିବେଦନ କରିଥାଏ । ମାଲାର୍ଡ଼ ଜାତୀୟ କେତେକ ପୁରୁଷ ମରାଳ ପରି କାମୁକ ପୁରୁଷ ବିହଙ୍ଗ ଜଗତରେ ବିରଳ । ମିଳନ ଋତୁରେ କାମୁକ ପୁରୁଷ ନିଜର ସର୍ବକ୍ଷଣର ସଙ୍ଗୀନୀ

ଥାଇ ମଧ୍ୟ ଅନ୍ୟ ସ୍ତ୍ରୀକୁ ସଙ୍ଗଦାନ କରିଥାଏ । ପୁରୁଷର ଏହି ବ୍ୟବହାରରେ ପତିପ୍ରାଣଗତ ସ୍ତ୍ରୀ ନିର୍ବାକ ଦର୍ଶକ ହୋଇ ନିରବରେ ଅଶ୍ରୁବିସର୍ଜନ କରେ ।

କେତେକ ଗୋଡ଼ ମରାଳିଙ୍କ ପୂର୍ବରାଗ ଓ ସେଇ ସମୟରେ ସେମାନେ କରୁଥିବା ନୃତ୍ୟକୁ ପେଙ୍ଗୁଇନ ନୃତ୍ୟ କୁହାଯାଏ । ଦକ୍ଷିଣ ମେରୁ ଅଞ୍ଚଳରେ ରହୁଥିବା ପେଙ୍ଗୁଇନ ସହ ଗୋଡ଼ ମରାଳିଙ୍କ କୌଣସି ସମ୍ବନ୍ଧ ନାହିଁ, ହେଲେ ଯେଉଁ ପଦ୍ଧତିରେ ଗୋଡ଼ମରାଳି ବୁଡ ପକାଏ ଦେଖିଲେ ମନେ ହେବ ସତେ ଅବା ପେଙ୍ଗୁଇନ ଓ ଗୋଡ଼ମରାଳି ଏକ ଶିକ୍ଷକଠାରୁ ବୁଡ଼ ମାରିବା କାଇଦା ଶିଖିଛନ୍ତି । ମଣିଷ ଯେବେଠୁ ଦକ୍ଷିଣ ମେରୁରେ ପହଞ୍ଚିଛି ସେହି ଦିନଠୁ ପେଙ୍ଗୁଇନ ସହ ତା'ର ସୌହାର୍ଦ୍ଦ୍ୟ ବଢ଼ିଛି । ଦକ୍ଷିଣ ମେରୁ ନିବାସୀ ପେଙ୍ଗୁଇନ ଦଳବଦ୍ଧ ହୋଇ ରୁହେ । ଗୋଟିଏ ଗୋଟିଏ କଲୋନୀରେ ହଜାରରୁ ଉର୍ଦ୍ଧ୍ୱ ପେଙ୍ଗୁଇନ ବାସ କରନ୍ତି । ଦଳବଦ୍ଧ ହୋଇ ରହୁଥିବାରୁ ପେଙ୍ଗୁଇନର ଡର ଭୟ ଅନ୍ୟ ପକ୍ଷୀଠାରୁ କମ୍ । ହୋଇପାରେ ଉଡିପାରୁ ନଥିବାରୁ ଟିକିଏ ଶବ୍ଦରେ ଏହା ଅନ୍ୟ ପକ୍ଷୀ ପରି ଚମକି ଉଠେ ନାହିଁ । ପେଙ୍ଗୁଇନ ଏକ ଦାର ପ୍ରିୟ । ନିଜର ସନ୍ତାନ ଓ ସଂସାର ପାଇଁ ଅନେକ ସମୟରେ ମୃତ୍ୟୁକୁ ଆବୋରୀ ନେବାକୁ ସେ ପଛ ପା ହୁଏ ନାହିଁ । ସବୁ ପିତାମାତା ନିଜ ସନ୍ତାନକୁ ସ୍ନେହ କରନ୍ତି ହେଲେ ପେଙ୍ଗୁଇନ ପିତାର ସ୍ନେହ ଅନନ୍ୟ ।

ବରଫ ଦେଶରେ କାଠି କୁଟାର ଅଭାବ । ଛୋଟ ଛୋଟ ପଥର ସଜେଇ ପେଙ୍ଗୁଇନ ତା'ର ବସା ବାନ୍ଧିଥାଏ । ଗୋଟିଏ ଯାଗାରେ ଦଳବଦ୍ଧ ହୋଇ ରହୁଥିବାରୁ ବସା ନିର୍ମାଣ ପାଇଁ ଛୋଟ ପଥରର ଅଭାବ ହୁଏ । ଏହି ସମୟରେ ଅନ୍ୟ ବସାରୁ ପଥର ଚୋରୀ କରିବାକୁ ପେଙ୍ଗୁଇନ ଦ୍ୱିଧା ବୋଧ କରେ ନାହିଁ । ପେଙ୍ଗୁଇନର ପଥର ଚୋରୀ କରିବା ପଦ୍ଧତି ବର୍ଣ୍ଣନା କରି ଲୁଇ ବେଓ୍ୱନାସି ଲେଖିଛନ୍ତି, ''- ତା'ପରେ ଚୋର ନିର୍ଲିପ୍ତ ଭଙ୍ଗୀରେ ଅନ୍ୟ ବସା ପାଖରେ ଏପଟ ସେପଟ ହୁଏ । ଏହି ସମୟରେ ତାକୁ ଯଦି କେହି ଦେଖିପକାଏ, ଛୋଟ ପିଲାଟିଏ ଦୁଷ୍ଟାମୀ କଲା ବେଳେ ସବୁ ଜାଣି ନ ଜାଣିଲା ପରି ପେଙ୍ଗୁଇନ ଆକାଶକୁ ଅନାଏ, ଅଯଥା କୁଣ୍ଡେଇ ହୁଏ । ପରେ ସୁଯୋଗ ଦେଖି ଅଣ୍ଟାରେ ପଥର ଧରି ଦୌଡ଼ି ପଳାଏ ।'' ବସାରୁ ପଥର ଚୋରୀ ଏବଂ ଅନ୍ୟ ବସା ଦଖଲ ପେଙ୍ଗୁଇନ ଦମ୍ପତିଙ୍କ ସମସ୍ୟା । ତେଣୁ ବସା ତିଆରି ପରେ ପରେ ପୁରୁଷ ଓ ସ୍ତ୍ରୀ ପାଳି କରି ବସା ଜଗନ୍ତି । ବସା ଛାଡ଼ି ସମୁଦ୍ରକୁ ଶିକାର ପାଇଁ ଯାଇଥିବା ପେଙ୍ଗୁଇନ ଦମ୍ପତି ଯଦି ଆସି ଦେଖନ୍ତି ତାଙ୍କର ବସା ଅନ୍ୟ ଦଖଲକୁ ଚାଲିଯାଇଛି, ସେ ଧରଣ ପରିସ୍ଥିତିରେ ଦୁଇ ଦମ୍ପତିଙ୍କ ଭିତରେ ପ୍ରବଳ ବଚସା ହୁଏ । ହେଲେ ପେଙ୍ଗୁଇନ ସମାଜ ରୀତିରେ ଥରେ ଅଧିକାର ହରେଇଲେ ତାହା ପୂନର୍ବାର ପାଇବା ବଡ଼ କଷ୍ଟ ।

ଅଣ୍ଡା ଉଷୁମ କରିବା ପେଙ୍ଗୁଇନ ପାଇଁ ସବୁଠାରୁ ବଡ଼ ସମସ୍ୟା । ଦକ୍ଷିଣ ମେରୁ ଅଞ୍ଚଳର ତାପମାତ୍ରା ବର୍ଷର ଅଧିକାଂଶ ସମୟରେ ଶୂନ୍ୟ ଡିଗ୍ରୀ ତଳକୁ ଥାଏ । ଅଣ୍ଡା ତଳେ ପଡ଼ିଗଲେ ବରଫ ପାଲଟି ଯିବ । ଏଥିପାଇଁ ଏମ୍ପରର (Emperor) ପେଙ୍ଗୁଇନ ପିତାମାତାଙ୍କ ଅଣ୍ଟା ତଳେ କଙ୍ଗାରୁ ପରି ଥଳିଟିଏ ରହିଛି । ଥଳି ଭିତରେ ଗୋଟିଏ ମାତ୍ର ଅଣ୍ଡା ରହିପାରେ । ଅଣ୍ଡା ଉଭୟ ପିତା ମାତା ପାଳିକରି ଉଷୁମ କରନ୍ତି । ଅଣ୍ଡା ଉଷୁମ କଲା ବେଳେ ସେମାନେ ସମୁଦ୍ରକୁ ଶୀକାର



ଆଫ୍ରିକା ଓଟପକ୍ଷୀର ପୂର୍ବରାଗ ନୃତ୍ୟ

ପାଇଁ ଯାଇ ପାରନ୍ତି ନାହିଁ । ଯଦି କେବେ ସମୁଦ୍ରକୁ ଯିବାକୁ ପଡ଼େ ଏକ ଅନ୍ୟର ଥଳିରେ ଅଣ୍ଡା ଥୋଇ ଶିକାରକୁ ଯାଏ । ପେଙ୍ଗୁଇନର ଥଳିରେ ଅଣ୍ଡା ଥୋଇବା ପ୍ରକ୍ରିୟାଟିକୁ ବର୍ଣ୍ଣନା କରି ହେନରୋଧ ଲେଖିଛନ୍ତି, ''ପିତା ବା ମାତାଙ୍କ ମଧ୍ୟରୁ ଜଣେ କେହି ଶୀକାରରୁ ଫେରିଲେ ପ୍ରଥମେ ସେମାନେ ଦେହରୁ ପାଣି ନିଗାଡ଼ି ଦିଅନ୍ତି, ପରେ ନିବିଡ଼ ଆଲିଙ୍ଗନରେ ଉଭୟ କିଛି ସମୟ ରୁହନ୍ତି । ଏହି ସମୟରେ ଡେଣା ସଦୃଶ ଫ୍ଲିପର ଦ୍ୱାରା ଜଣେ ଅନ୍ୟଜଣଙ୍କ ପିଠି ଥାପୁଡ଼େଇ ଦିଏ । ଆଲିଙ୍ଗନବଦ୍ଧ ଅବସ୍ଥାରେ ଅଣ୍ଡା ଜଣଙ୍କ ଥଳିରୁ ଅନ୍ୟ ଜଣଙ୍କ ଥଳିକୁ ସ୍ଥାନାନ୍ତରିତ ହୋଇଥାଏ ।'' ଅଣ୍ଡା ଫୁଟି ଛୁଆ ବାହାରିବା ପରେ ମଧ୍ୟ ପିତାମାତାଙ୍କ ଥଳି ଭିତରେ ଛୁଆର ପ୍ରାଥମିକ ବୃଦ୍ଧି ହୋଇଥାଏ । ଏମପରର ପେଙ୍ଗୁଇନ ସାଧାରଣତଃ ସମୁଦ୍ରଠାରୁ ଦୂରରେ ରୁହେ । ଅଣ୍ଡା ସ୍ଥାନାନ୍ତର ପରେ ପିତା ବା ମାତାଙ୍କୁ ସମୁଦ୍ରକୁ ଯାଇ ଫେରିବାକୁ ମାସାଧିକ କାଳ ଲାଗିଯାଏ । ତେଣୁ ଅଣ୍ଡା ଉଷୁମ କଲା ବେଳେ ପିତା ବା ମାତା ମଧ୍ୟରୁ ଜଣକୁ ଉପବାସରେ କଟେଇବାକୁ ହୁଏ । ବେଳେବେଳେ ଏହି ଉପବାସ ଦୁଇମାସ ପର୍ଯ୍ୟନ୍ତ ଲମ୍ବିଯାଏ । ଦୀର୍ଘଦିନ ଉପବାସ ପରେ ଅନେକ ପେଙ୍ଗୁଇନ ଦୁର୍ବଳ ହୋଇ ମୃତ୍ୟୁ କବଳରେ ପଡ଼ିଯାଆନ୍ତି । ସନ୍ତାନ ପାଇଁ ପିତାମାତାଙ୍କ ତ୍ୟାଗର କୌଣସି ତୁଳନା ହୋଇ ନପାରେ । ତେବେ ସନ୍ତାନ ପାଇଁ ଭୋକରେ ରହି ଶେଷରେ ପ୍ରାଣତ୍ୟାଗ ପକ୍ଷୀ କୁଳରେ ନୂତନ କଥା ନୁହେଁ । ଅଷ୍ଟ୍ରେଲିଆର ଏମୁ ଓ ଆଫ୍ରିକାର ଓଟ ପକ୍ଷୀ ମଧ୍ୟ ମାସାଧିକ କାଳ ଉପବାସରେ ରୁହନ୍ତି ।

# ମୋ ଜୀବନ ପଛେ ନର୍କେ ପଡ଼ିଥାଉ...

ପ୍ରକୃତିର ବୈଚିତ୍ର୍ୟ କେବଳ ଋତୁ ପରିବର୍ତ୍ତନ ବା ପୃଥିବୀର ଭୌଗୋଳିକ ରୂପରେଖ ପ୍ରକାଶରେ ସୀମାବଦ୍ଧ ନୁହେଁ । ତା'ରି କୋଳରେ ବିହଙ୍ଗ କୁଳରେ ଜନ୍ମି କୋଇଲି ତା' ନିଜ ଦାୟିତ୍ୱ ଓ ବୋଝ ଅନ୍ୟ ଉପରେ ଲଦି ନିଜେ ଡ଼େଣାରେ ପବନ ଲଗେଇ ଆନନ୍ଦରେ କୁହୁ କୁହୁ କରୁଛି । ଅନ୍ୟ ପଟେ ଦରଦୀ କୋଚିଲାଖାଇ ସତେ ଅବା ତ୍ୟାଗ ଓ ତିତିକ୍ଷାର ଏକ ପ୍ରତୀକ ।

କୋଇଲିର ବ୍ୟବହାର ଓ ଚାଲିଚଳଣକୁ ଯଦି ମଣିଷର ସାମାଜିକ ନିୟମ କାନୁନ ଓ ବିଚାରବୋଧ ଦେଇ ମପା ହୁଏ, ତେବେ କୋଇଲି ପରି ନିଷ୍ଠୁର ସ୍ୱାର୍ଥପର ଚଢ଼େଇଟିଏ ବିହଙ୍ଗ ଜଗତରେ ଅଛି କି ନାହିଁ ସନ୍ଦେହ ! ଜନ୍ମ ହୋଇ ସେ ଅନ୍ୟକୁ ସହ୍ୟ କରିପାରେ ନାହିଁ, ବଡ଼ ହୋଇ କୋଇଲି ସ୍ତ୍ରୀ ହୁଏ ବହୁଗାମିନୀ, ନିଜେ ବସା ନ ବାନ୍ଧି ସେ କାଉ ବସାରେ ଅଣ୍ଡା ଦିଏ । କାହିଁକି ? ବସା ବାନ୍ଧିବାରେ କୋଇଲି ଦମ୍ପତିଙ୍କ ଏ ଅନୀହା କାହିଁକି ? ସେ କ'ଣ ନିଜେ ବସା ବାନ୍ଧିପାରେ ନାହିଁ ? ଅଥବା ବସା ବାନ୍ଧିବାର ଜନ୍ମଗତ ପ୍ରବୃତ୍ତି ଜାଣିଶୁଣି ଭୁଲିଯାଇଛି । ସନ୍ତାନ ପ୍ରତି ସ୍ନେହ, ତା'ର ଉପଯୁକ୍ତ ରକ୍ଷଣାବେକ୍ଷଣ ଓ ଲାଳନ ପାଳନ ଆଦି କର୍ମ ପ୍ରତ୍ୟେକ ବିହଙ୍ଗ ପିତାମାତା ଯେ କୌଣସି ଉଚ୍ଚବର୍ଗର ପ୍ରାଣୀ ପରି କରିଥାନ୍ତି ଏବଂ ଅଧିକାଂଶ କ୍ଷେତ୍ରରେ ଉଭୟ ପିତାମାତା ମିଳିମିଶି ଏହି କାର୍ଯ୍ୟଟିକୁ କରିଥାନ୍ତି । ତେବେ ବିହଙ୍ଗ କୁଳରେ ଜନ୍ମି କୋଇଲି କାହିଁକି ଦଳଛଡ଼ା ?



କୋଚିଲାଖାଇ ମାତା ଓ ଶାବକ

କୋଇଲିର ପାରିବାରିକ ଜୀବନ ବୋଲି କିଛି ନାହିଁ । ମିଳନ ପରେ କୋଇଲି ଦମ୍ପତିଙ୍କ ବନ୍ଧନ ଧୀରେ ଧୀରେ ଶୀଥିଳ ହୋଇଯାଏ । ସୁଯୋଗ ଉଣ୍ଡି ଦିନେ କୋଇଲି ଅନ୍ୟ ବସାରେ ଅଣ୍ଡାଟି ଦେଇ ଦିଏ । ପରେ ପରେ ପୁଣି ଏକ ନୂତନ ପୁରୁଷ ସହ ବନ୍ଧୁତା କରେ । ପୁରୁଷ ଓ ସ୍ତ୍ରୀ ମଧ୍ୟରେ ପରସ୍ପର ପ୍ରତି ଆନୁଗତ୍ୟ ନ ଥିବାରୁ କୋଇଲିର ବିବାହ ଏକ ଧରଣର କାମଚଳା ସହବସ୍ଥାନ । ତେଣୁ ସନ୍ତାନ ଲାଳନର ଝିଞ୍ଜଟିଆ କାମଟି ଅନ୍ୟ କାନ୍ଧରେ ଲଦି ଉଭୟ ପିତାମାତା ମୁକ୍ତ ହୋଇଯାଆନ୍ତି ।

ଅଣ୍ଡା ଦେବା ପାଇଁ କୋଇଲି କେବଳ କାଉ ବସା କାହିଁକି ବାଛିଲା ? ପାରା ବସାର ଗଠନ କାଉ ବସା ପରି ଅପରିଚ୍ଛନ୍ନ ତେବେ କାହିଁକି ପାରା ବସାକୁ ସେ ସଯତ୍ନରେ ଏଡ଼େଇ ଗଲା ? ଇଉରୋପର କୋଇଲି ଜାତୀୟ କୁକ୍କୁ(cuckoo), ପାରା, ସାରସ, ଭଦଭଦଳିଆ ଆଦି ଚଢ଼େଇ ବସାରେ ଅଣ୍ଡା ନେଇଥାଏ । କୋଇଲିର ବସା ବାଛିବା ଏବଂ ସେଥି ସଙ୍ଗେ ନିଜ ଅଣ୍ଡା ଉଷୁମ କରିବାର ପାଇଁ ଧାତ୍ରୀ ମା' ନିଯୋଗ କରିବା ପ୍ରକ୍ରିୟାଟି ନିର୍ଭର କରେ, ତା'ର ଅଣ୍ଡାର ଆକାର ଓ ରଙ୍ଗ ନେଇ । କାରଣ ଯେଉଁ ଧାତ୍ରୀ ମା' ଅଣ୍ଡା ଉଷୁମ କରିବ ସେ ଯଦି ତା' ନିଜ ଅଣ୍ଡା ଗହଣରେ ବିଜାତୀୟ ଅଣ୍ଡା ଦେଖେ, ତେବେ ସେ ବିଜାତୀୟ ଅଣ୍ଡାକୁ ନଷ୍ଟ କରି ଦିଏ ।

ପୂର୍ବେ ଅନେକ ପକ୍ଷୀବିଶାରଦ ବିଶ୍ୱାସ କରୁଥିଲେ କୋଇଲି ପ୍ରଥମେ ଧାତ୍ରୀ ମା' ନିଯୋଗ କରେ । ପରେ ପରେ ସେଇ ମୁତାବକ ଅଣ୍ଡା ଦେଇଥାଏ । ଏଥିପାଇଁ ସେ ନିଜେ ଶରୀରଠୁ ବଡ଼ ଶରୀର ଥିବା ଧାତ୍ରୀ ମାତାର ସନ୍ଧାନ କରିଥାଏ । ଏହି ତଥ୍ୟ ବିପକ୍ଷରେ ସବୁଠାରୁ ବଡ଼ ଯୁକ୍ତି ଯଦି ଇଛା ମୁତାବକ ଅଣ୍ଡାର ଆକାର ଓ ରଙ୍ଗ ପରିବର୍ତ୍ତନ କରିହୁଅନ୍ତା ତେବେ ପ୍ରକୃତିର ନିଜସ୍ୱ ନିୟମ ବୋଲି କିଛି ରୁହନ୍ତା ନାହିଁ । ପ୍ରକୃତି ସେତେବେଳେ ବ୍ୟକ୍ତିବିଶେଷର ନିୟମରେ ପରିଚାଳିତ ହୁଅନ୍ତା । ଆଉ ଦଳେ କହିଲେ କୋଇଲି ଅଣ୍ଡାରୁ ଶାବକ ବାହାରିଲେ, ଶାବକ ଧାତ୍ରୀ ମାତା ଦେଉଥିବା ଖାଦ୍ୟ ଉପରେ ନିର୍ଭର କରେ । ପରେ ସେ ସେଇ ଧରଣର ଖାଦ୍ୟ ପ୍ରତି ଆକୃଷ୍ଟ ହୁଏ । ପରବର୍ତ୍ତୀ ସମୟରେ ଖାଦ୍ୟର ପ୍ରକାରଭେଦ ନେଇ ଅଣ୍ଡାର ଆକାର ଓ ରଙ୍ଗ ବଦଳିଯାଏ । ଏ ତଥ୍ୟରେ ଅନେକ ଭ୍ରାନ୍ତି ରହିଛି । ଏହି ପ୍ରସଙ୍ଗରେ ଡାରଉଇନ କହନ୍ତି, କୋଇଲି ପ୍ରଥମେ ବାଛ ବିଚାର ନକରି ବିଭିନ୍ନ ପକ୍ଷୀଙ୍କ ବସାରେ ଅଣ୍ଡା ଦେଉଥିଲା । ଅଣ୍ଡା ଉଷୁମ କଲା ବେଳେ ଧାତ୍ରୀ ମା ବିଜାତୀୟ ଅଣ୍ଡାକୁ ନଷ୍ଟ କରି ଦେଲା ମାତ୍ର ଯେଉଁଠି ଅଣ୍ଡା ଅନ୍ୟ ବସାରେ ଥିବା ଅଣ୍ଡା ସହ ମିଶିଗଲା ସେଠାରେ କୋଇଲି ଅଣ୍ଡାରୁ ଛୁଆ ଫୁଟି ପାରିଲା । ଏହି ତଥ୍ୟ ଡାରଉଇନଙ୍କ ବହୁ ପ୍ରଚଳିତ ନ୍ୟାଚୁରାଲ ସିଲେକସନ୍ (Natural Selection) ତଥ୍ୟ ଉପରେ ଅଧାରିତ ।

ଅନ୍ୟ ବସାରେ ଜନ୍ମ ହୋଇ କୋଇଲି ତା'ର ସହୋଦରା (?) ମାନଙ୍କୁ ସହ୍ୟ କରିପାରେ ନାହିଁ । ସୁଯୋଗ ପାଇଲେ ସେ ଅନ୍ୟମାନଙ୍କୁ ଠେଲି ଫିଙ୍ଗି ଦିଏ । ଥରେ ଉଡ଼ିବାକୁ ଶିଖିଗଲେ ସେ ପୁନର୍ବାର ଧାତ୍ରୀ ମାତାର ଆଖପାଖକୁ ଆସେ ନାହିଁ । ହତଭାଗ୍ୟ କୋଇଲି ଜନ୍ମହୋଇ ମା'ର ସ୍ନେହରୁ ବଞ୍ଚିତ । ତା'ପରେ ଅଜାଣତରେ ଯିଏ ତାକୁ ପାଳିଲା ସେ ମଧ ତାକୁ ଚିହ୍ନିଲା ପରେ ପାଖକୁ ପଶିବାକୁ ଦେଲା ନାହିଁ । ହୋଇପାରେ ଏଇ କାରଣରୁ ବିରହ ମଧୁର ଗୀତ ଗାଇ ସେ ତା'ର ଦୁଃଖ ଭୁଲେ ।

ଅଣ୍ଡା ଦେବା, ଅଣ୍ଡା ଉଷୁମ କରିବା, ଛୁଆକୁ ଶତ୍ରୁ କବଳରୁ ରକ୍ଷା, ଶାବକ ନିଜେ ଆହାର ସଂଗ୍ରହ କରି ନ ଶିଖିବା ଯାଏ ତାର ଆହାର ଯୋଗାଣ ଆଦି କାର୍ଯ୍ୟ ବଂଶରକ୍ଷା ପାଇଁ ଅପରିହାର୍ଯ୍ୟ । ଅଣ୍ଡା ଦେବା କାର୍ଯ୍ୟଟି ସ୍ତ୍ରୀର ଏକଚାଟିଆ ତେବେ ଅନ୍ୟ କାର୍ଯ୍ୟଗୁଡ଼ିକ ଉଭୟ ପୁରୁଷ ନିଜ ମଧ୍ୟରେ ନିଜ ମଧ୍ୟରେ ବାଣ୍ଟି କରିଥାନ୍ତି । ଯେଉଁଠି ପୁରୁଷ କେବଳ ମିଳିତ ହୋଇ ପିତାର ଧର୍ମ ସମ୍ପାଦନ କରିଥାଏ ସେ କ୍ଷେତ୍ରରେ ସ୍ତ୍ରୀ ଭିନ୍ନ ଭିନ୍ନ ଉପାୟମାନ ଉଦ୍ଭାବନ କରି ଅଣ୍ଡା ଓ ଶାବକର ଯତ୍ନ ନେଇଥାଏ । ଇଣ୍ଡୋନେସିଆର କୁକୁଡ଼ା ଜାତୀୟ ବ୍ରଶଟର୍କି ଉଷ୍ଣ ପ୍ରସବଣ ନିକଟରେ ବା ଗରମ ବେଳାଭୂମିରେ ଗାତ ଖୋଳି ଅଣ୍ଡା ଦେଇଥାଏ । ତେଣୁ ଅଣ୍ଡା ଉଷୁମ କରିବାର ପ୍ରାଥମିକ କାର୍ଯ୍ୟଟି ଗାତ ଭିତରେ ହୋଇଯାଏ । ଦକ୍ଷିଣ ଅଷ୍ଟ୍ରେଲିଆର ବ୍ରଶଟର୍କି ନିରୋଳା ସ୍ଥାନମାନଙ୍କରେ ଗାତ ଖୋଳି ତା ଭିତରେ ପଚା ସଢ଼ା ପତର ଆଦି ଥୋଇଦିଏ । ପରେ ସଢ଼ିଲେ ସେଥିରୁ ବାମ୍ପ ବାହାରେ । ସେଇ ଉଷ୍ଣ ବାମ୍ପରେ ଅଣ୍ଡା ସହଜରେ ଉଷୁମ ହୋଇଯାଏ ।

ପ୍ରକୃତିର ଗୋଟିଏ ପଟେ ସ୍ୱାର୍ଥପର କୋଇଲି ଅନ୍ୟ ପଟେ ଦରଦୀ କୋଚିଲାଖାଇର ନିଜ ବଂଶଜ ପାଇଁ ଆତ୍ମତ୍ୟାଗ ଦେଖିଲେ ମନେପଡ଼େ ସେଇ ଅନବଦ୍ୟ ଉକ୍ତି, ''ମୋ ଜୀବନ ପଛେ ନର୍କେ ପଡ଼ିଥାଉ, ଜଗତ ଉଦ୍ଧାର ହେଉ ।'' ଅଣ୍ଡା ଦେବାର ସମୟ ହେଲେ ସ୍ତ୍ରୀ କୋଚିଲାଖାଇ ଏକ ବୃକ୍ଷ କୋରଡ଼ରେ ଆଶ୍ରୟ ନିଏ । ପରେ ପରେ ପୁରୁଷ କାଠି କୁଟା ମାଟି ଆଦି ନେଇ କୋରଡ଼ର ମୁହଁଟି ବନ୍ଦ କରିଦିଏ । ସ୍ତ୍ରୀର ଚଞ୍ଚୁଟି ପଦାକୁ ବାହାରିଲା ଭଳି ସେଥିରେ ଖୋପଟିଏ ଥାଏ । ଅଣ୍ଡା ଦେବା ସମୟ ନିକଟତର ହେଲେ ସ୍ତ୍ରୀ ଦେହରୁ ପର ଝଡ଼ିଯାଏ ଓ ସେଇ ପର ଉପରେ ସ୍ତ୍ରୀ ତାର ଅଣ୍ଡା ଉଷୁମ କରିଥାଏ । ମା' ଦେହର ପର ଶାବକମାନଙ୍କ ପାଇଁ ନରମ ଗଦି ଭଳି କାମ କରିଥାଏ । ସ୍ତ୍ରୀ ଏକୁଡ଼ିଶାଳରେ ଥିବା ସମୟରେ ପୁରୁଷ ତା ପାଇଁ ଆହାର ସଂଗ୍ରହ କରେ, ପରେ ଅଣ୍ଡା ଫୁଟି ସେଥିରୁ ଶାବକ ବାହାରିଲେ ଉଭୟ ସ୍ତ୍ରୀ ଓ ଛୁଆମାନଙ୍କ ପାଇଁ ଆହାର ପୁରୁଷ ଯୋଗାଇଥାଏ । ତିନି ଚାରୋଟି ଛୁଆ ଓ ସ୍ତ୍ରୀ ପାଇଁ ଆହାର ସଂଗ୍ରହ କରୁ କରୁ ପୁରୁଷ ନିଜ ପାଇଁ ଯେ ଖାଦ୍ୟ ଦରକାର ତାହା ପାଶୋରୀ ଯାଏ, ସେଥିସଙ୍ଗେ ଅତ୍ୟଧିକ ପରିଶ୍ରମରୁ କ୍ଷୀଣରୁ କ୍ଷୀଣତର ହୋଇଯାଏ । ପୁରୁଷର ଏତାଦୃଶ ଅବସ୍ଥା ସ୍ତ୍ରୀ ବୋଧହୁଏ ସହି ପାରେ ନାହିଁ । ତେଣୁ ଏକୁଡ଼ିଶାଳର ଦୁଆର ଭାଙ୍ଗି ପଦାକୁ ବାହାରି ଆସେ ପୁରୁଷକୁ ସାହାଯ୍ୟ କରିବା ପାଇଁ ।

ଯଦି କେବେ ଆହାର ସଂଗ୍ରହ ବେଳେ ପୁରୁଷ ଦୁର୍ଘଟଣାର ସମ୍ମୁଖୀନ ହୋଇ ବସାକୁ ଫେରି ପାରେ ନାହିଁ, ସେତେବେଳେ ସ୍ତ୍ରୀ ଓ ଛୁଆ ସମ୍ପୂର୍ଣ୍ଣ ଅସହାୟ ହୋଇ ଯାଆନ୍ତି । ସେ ସମୟରେ ମା' ଏକୁଡ଼ିଶାଳରୁ ପଦାକୁ ଆସିଲେ ମଧ୍ୟ ଦେହରେ ପର ନ ଥିବାରୁ ଉଡ଼ି ପାରେ ନାହିଁ । ଏ ଧରଣର ପରିସ୍ଥିତିରେ ମା' ଓ ଛୁଆ ନ ଖାଇ ମରିଯିବାର କଥା ମାତ୍ର କଥାରେ ଅଛି, ''ଯାହାକୁ ରଖିବେ ଅନନ୍ତ... ।'' ପ୍ରକୃତିର ନିୟମ ଗୋଟିଏ ହାତରେ ସେ ବିନାଶ କରନ୍ତି ପୁଣି ଅନ୍ୟ ହାତରେ ପାଳନ କରନ୍ତି । ପୁରୁଷର ଅନୁପସ୍ଥିତିରେ ସ୍ତ୍ରୀ ଏକୁଡ଼ିଶାଳରୁ ବିଳାପ କରେ ଅଥବା ସାହାଯ୍ୟ ପାଇଁ ଉଚ୍ଚ ସ୍ୱରରେ ଆବେଦନ କରେ, ସ୍ତ୍ରୀର ଆବେଦନକୁ ସମ୍ମାନ ଜଣାଇ କମ ବୟସର ଅନ୍ୟ ପୁରୁଷ ଆଗେଇ ଆସନ୍ତି । ନିଜ ସନ୍ତାନ ପରି ଅନ୍ୟ ପୁରୁଷ ସ୍ତ୍ରୀ ଓ ଶାବକମାନଙ୍କ ଦେଖାଶୁଣା କରେ ।

# ବିକୃତ ରୁଚି ବ୍ୟାଧିଗ୍ରସ୍ତ ଲାଳସା ଓ ରତିତୃପ୍ତି

ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ତିନୋଟି ବହିର ପ୍ରକାଶ ପୃଥିବୀରେ ମାନବ ଚିନ୍ତା ଜଗତରେ ଏକ ନୂତନ ମୋଡ଼ ଆଣିଲା । ବହି ତିନୋଟି କାର୍ଲ ମାର୍କ୍ସଙ୍କ ''ଦ୍ୟାସ୍ କ୍ୟାପିଟାଲ୍', ଚାର୍ଲସ ଡାରଉଇନଙ୍କ 'ଦି ଓରିଜିନ୍ ଅଫ ସ୍ପେସିସ୍', ସିଗ୍‌ମୁଣ୍ଡ ଫ୍ରଏଡ଼ଙ୍କ 'ଥ୍ରୀ ଏସେସ୍ ଅନ ଦି ଥିଓରି ଅଫ୍ ସେକ୍ସୁଆଲିଟି' । ଫ୍ରଏଡ଼ଙ୍କ ତତ୍ତ୍ୱ ତାଙ୍କ ସମସାମୟିକ ମନୋବୈଜ୍ଞାନିକ, ଡାକ୍ତର ଏପରିକି ସାଧାରଣ ଲୋକଙ୍କ ପାଇଁ ଥିଲା ଏକ ବଡ଼ ଧରଣର ମାନସିକ ଧକ୍କା । ଯେଉଁ ଆଙ୍ଗିକରୁ ଫ୍ରଏଡ଼ ମଣିଷର ମନ ଓ ତା'ର ବ୍ୟବହାରକୁ ବ୍ୟାଖ୍ୟାନ କଲେ, ତାହା ଅନେକଙ୍କ ପାଇଁ ଥିଲା ବିକୃତି ଓ କୁରୁଚିପୂର୍ଣ୍ଣ । ଫ୍ରଏଡ଼ଙ୍କ ମନୋବିଶ୍ଳେଷଣ ବଡ଼ ନିର୍ଲଜ୍ଜ ଭାବରେ ମଣିଷର ବାହର ଖୋଳପାଟା ଭାଙ୍ଗି ଭିତରର ମଣିଷଟାକୁ ପଦାକୁ ପକେଇ ଦେଲା । ଅନେକ ଧର୍ମୀୟ ନିଷେଧାଜ୍ଞାକୁ ଭାଙ୍ଗିଦେଲା । ଫ୍ରଏଡ଼ ତାଙ୍କ ବ୍ୟାଖ୍ୟାରେ କହିଲେ, 'କେବଳ ପ୍ରାପ୍ତ ବୟସ୍କ ଯୌନ ତୃପ୍ତି ଲାଭ କରେ କହିବାଟା ଭୁଲ, ଶିଶୁ ମଧ୍ୟ ଯୌନ ତୃପ୍ତି ଲାଭ କରେ । ସନ୍ତାନ ମା' ବକ୍ଷରୁ ସ୍ତନପାନ କଲାବେଳେ ଛୁଆ ଦୋଳିରେ ଝୁଲିଲା ବେଳେ ଏକ ଧରଣର ଯୌନ ତୃପ୍ତି ଲାଭ କରିଥାଏ । ଫ୍ରଏଡ଼ ମଣିଷ ଶରୀରରେ ଅନେକଗୁଡ଼ିଏ ଇଲାକାକୁ ଚିହ୍ନଟ କଲେ ଯେଉଁ ଅଞ୍ଚଳରେ ସ୍ପର୍ଶ ବା ଅନ୍ୟ ଉତ୍ତେଜନା ମଣିଷକୁ ଯୌନ ତୃପ୍ତି ଦେଇଥାଏ । ଏହି ସ୍ଥାନମାନଙ୍କରେ ଉତ୍ତେଜନା ଶରୀରରୁ ବ୍ୟାପି ଜନନାଙ୍ଗଠି ଠୁଳ ହୁଏ, ପରେ ତାହା ସମସ୍ତ ଶରୀରକୁ ବ୍ୟାପିଥାଏ । ଫ୍ରଏଡ଼ ତାଙ୍କର ତତ୍ତ୍ୱର ବ୍ୟାଖ୍ୟା ପାଇଁ ପ୍ରାୟତଃ ମଣିଷର ଉଦାହରଣମାନ ଦେଇଛନ୍ତି ହେଲେ ପରବର୍ତ୍ତୀ ସମୟରେ ପ୍ରାଣୀ ବ୍ୟବହାର ବିଜ୍ଞାନୀମାନେ ଲକ୍ଷ୍ୟ କଲେ ପ୍ରାଣୀମାନଙ୍କ ମଧ୍ୟରେ ଏପରି ଅନେକ ବ୍ୟବହାର ରହିଛି ଯାହାର ଫ୍ରଏଡ଼ିଅ ବିଶ୍ଳେଷଣ କରାଯାଇପାରେ । ପ୍ରଶ୍ନ ହୋଇପାରେ ମଣିଷର ନବ୍ୟ ସଭ୍ୟ ରୁଚିବୋଧ ଓ ସାମାଜିକ ନିୟମ କାନୁନର ବେଢ଼ା ମଧ୍ୟରେ ପ୍ରାଣୀମାନଙ୍କୁ ତଉଲିବାଟା କେତେଦୂର ଯୁକ୍ତିଯୁକ୍ତ ? ଏହାଛଡ଼ା ପ୍ରାଣୀମାନଙ୍କଠି ଏପରି ଅନେକ ଅଦ୍ଭୁତ ଆଚରଣମାନ ଦେଖାଯାଏ ଯାହାର କୌଣସି ଉତ୍ତର ଆଜି ମଣିଷ ପାଖରେ ନାହିଁ । ଗେଣ୍ଡାର ଧର୍ଷକାମ, ମିଳନ ବେଳେ ପୁରୁଷ ଏଣ୍ଡୁଅର ସ୍ତ୍ରୀକୁ ତୀବ୍ର ଦଂଶନ, ମୂଷା ଓ ବାଦୁଡ଼ିମାନଙ୍କ ମିଳନ ପୂର୍ବରୁ ପରସ୍ପର ଶରୀର ଦଂଶନ ସର୍ବୋପରି ମହୁମାଛିର ଆତ୍ମବଳି ବା ପୁରୁଷ ପ୍ରେଇଂ ମ୍ୟାନଟିସର ସ୍ତ୍ରୀ ଦ୍ୱାରା ହତ୍ୟାକୁ କ'ଣ ମଣିଷ ସମାଜର ନିୟମ ଦ୍ୱାରା ତଉଲି ହେବ ? ପ୍ରାଣୀମାନଙ୍କୁ ମଣିଷର ରୁଚିରେ ମାପିବାଟା ବାତୁଳତା । ପ୍ରାଣୀର ବ୍ୟବହାର ତା'ର ସହଜାତ ପ୍ରବୃତ୍ତି, ସେଠାରେ କେଉଁଟା ସ୍ୱାଭାବିକତା ଆଉ କେଉଁଟା ବିକୃତି ଭାଗ କରିବା ଅର୍ଥହୀନ ।

ଯେଉଁ ସମସ୍ତ ମେରୁଦଣ୍ଡୀ ପ୍ରାଣୀମାନଙ୍କରେ ଉଭୟ ମଳ ଏବଂ ଜନନ ସମ୍ବନ୍ଧୀୟ କୋଷ (ଶୁକ୍ରାଣୁ ଓ ଡିମ୍ବାଣୁ) ଶରୀରରୁ ଗୋଟିଏ ମାତ୍ର ପଥ ନେଇ ନିଷ୍କାସିତ ହୋଇଥାଏ, ସେଠାରେ ପଥଟିକୁ ପ୍ରାଣୀବିଜ୍ଞାନୀମାନେ କହନ୍ତି କ୍ଲୋଆକା (Cloaca) । ସରୀସୃପ ବିହଙ୍ଗ ଏବଂ ଉଭୟଚରର କ୍ଲୋଆକାରେ ଥିବା ସମ୍ବେଦନଶୀଳ ସ୍ପର୍ଶକୋଷ ପ୍ରାଣୀକୁ ସ୍ପର୍ଶଜନିତ ସୁଖ ଦେଇଥାଏ । ବିହଙ୍ଗର

ଗୁହ୍ୟ ଦ୍ୱାରଟି ସାମାନ୍ୟ ସ୍ପର୍ଶ ବିହଙ୍ଗକୁ ସ୍ପର୍ଶ ଜନିତ ତୃପ୍ତି ଦେଇଥାଏ । କ୍ରମ ବିବର୍ତ୍ତନ ଫଳରେ ସ୍ତନ୍ୟପାୟୀ ସ୍ତ୍ରୀ ଏବଂ ପୁରୁଷଠି ମଳଦ୍ୱାର ଅଲଗା ହୋଇଗଲା । ସ୍ପର୍ଶ କୋଷଗୁଡ଼ିକ ଜନନ ଦ୍ୱାର ପାଖରେ କେନ୍ଦ୍ରିଭୂତ ହୋଇ ରହିଲା, ଫଳରେ ମିଳନ ବେଳେ ଜନନେନ୍ଦ୍ରିୟର ସ୍ପର୍ଶ ପ୍ରାଣୀର ଯୌନତୃପ୍ତିର ସହାୟକ ହେଲା । ଏହି କାରଣରୁ ଅନେକ ପ୍ରାଣୀ ବନ୍ଧୁ ବା ବାନ୍ଧବୀର ଅନୁପସ୍ଥିତିରେ ସ୍ୱମୈଥୁନ ପ୍ରକ୍ରିୟାରେ ଲିପ୍ତ ରହି ଯୌନତୃପ୍ତି ଲାଭ କରନ୍ତି । ହାତୀ, ଡଲଫିନ୍, କେତେକ ମୂଷା, କୁକୁର ଆଦି ପ୍ରାଣୀ ଜନନାଙ୍ଗ ଲେହନ କରି ଯୌନତୃପ୍ତି ଲାଭ କରିଥାଆନ୍ତି । ଶରୀରର ଉତ୍ତେଜକ ଇଲାକାଗୁଡ଼ିକର ଅବସ୍ଥିତି ବିଭିନ୍ନ ପ୍ରାଣୀର ଭିନ୍ନ ଭିନ୍ନ ହୋଇଥିବାରୁ ଆତ୍ମରତିର ପ୍ରକ୍ରିୟାଗୁଡ଼ିକ ମଧ ଭିନ୍ନ ଧରଣର ।

କେତେକ ପୁରୁଷ ହରିଣ ମୁଣ୍ଡ ତଳକୁ କରି ଶିଙ୍ଘକୁ ଧୀରେ ଧୀରେ ପାଙ୍କଗଦା ବା ନରମ କାଦୁଅ ମାଟି ଭିତରେ ଆଗକୁ ପଛକୁ କରନ୍ତି । ଏହି କ୍ରିୟା ଦ୍ୱାରା ପୁରୁଷଟି ମିଳନ ଜନିତ ସୁଖ ଲାଭ କରିଥାଏ । ତେବେ ଭାବିବାକୁ ଅବାକ ଲଗେ ଯେଉଁ ଶିଙ୍ଘର ସାମାନ୍ୟ ସ୍ପର୍ଶରେ ପୁରୁଷ ଯୌନତୃପ୍ତି ଲାଭ କରୁଛି ସେଇ ଶିଙ୍ଘର ଦମ୍ଭରେ ସେ ଅନ୍ୟ ପୁରୁଷ ହରିଣ ସହ ଦ୍ୱନ୍ଦ ଯୁଦ୍ଧରେ ଅବତୀର୍ଣ୍ଣ ହେବାକୁ ପଛପା ହୁଏ ନାହିଁ ।

ମଣିଷର ନୈତିକ ବିଚାରବୋଧରେ ସମକାମୀତା ବା ବିଜାତୀୟ ପ୍ରାଣୀ ସହ ଯୌନତା ଏକ ବ୍ୟାଧିଗ୍ରସ୍ତ ରୁଚିର ପରିଚାୟକ । ଦଳବଦ୍ଧ ହୋଇ ରହୁଥିବା ବାନରମାନଙ୍କ ମଧରେ ସମକାମୀତା ଏକ ଗ୍ରହଣୀୟ ସାମାଜିକ ପ୍ରଥା । ବୟଃ ପ୍ରାପ୍ତି ହେବା ପୂର୍ବରୁ ଦୁର୍ବଳ (ବୁଦ୍ଧିମାନ ?) ପୁରୁଷ ବାନର ଦଳପତିର ଅନୁଗ୍ରହ ପାଇଁ ଯେଉଁ ଭାବଭଙ୍ଗୀ ଓ ବ୍ୟବହାର କରିଥାଏ, କର୍ନାଡ଼ ଜେସନରଙ୍କ ଭାଷାରେ, "It is a sexual offer" ନିଜକୁ ନିବେଦନ କରିବାର ଏକ ଉପାୟ । ଠିକ୍ ସେଇଭଳି ଦୁର୍ବଳ ସ୍ତ୍ରୀ ବାବୁନ ନିଜକୁ ସମାଜର ଉଚ୍ଚ ପାହ୍ୟାରେ ଥିବା ସବଳ ସ୍ତ୍ରୀ ନିକଟରେ ସମର୍ପି ଥାଏ । ଏହି ସମର୍ପଣରେ ଦୁର୍ବଳର ଦୁଇଟି ଉଦ୍ଦେଶ୍ୟ ସାଧିତ ହୁଏ । ଆଶ୍ରିତ ଦୁର୍ବଳର ଖାଦ୍ୟ ଯଦି କେହି ଛଡ଼େଇ ନିଏ ବା ଆଶ୍ରିତକୁ ତା'ର ନିର୍ଦ୍ଦିଷ୍ଟ ଡାଳ ବା କୋରଡ଼ରୁ ତଡ଼ି ଦିଏ, ସେତେବେଳେ ଆଶ୍ରୟଦାତା ଖିଙ୍କାରୀ ଉଠେ । ପରିବର୍ତ୍ତେ ଦୁର୍ବଳ ସବଳର ପ୍ରୀତି ସାଧନ ପାଇଁ ନିଜକୁ ଅର୍ପିଥାଏ ।

ବୟଃସନ୍ଧିରେ ସମକାମୀତା ଅନେକ ସ୍ତନ୍ୟପାୟୀଙ୍କ ଏକ ସାଧାରଣ ଆଚରଣ । ମ୍ୟାକ୍‌ବ୍ରାଇଡ଼ ଓ ହବ ନାମକ ଦୁଇଜଣ ବ୍ୟବହାର ବିଜ୍ଞାନୀ ଦୁଇଟି ପୁରୁଷ ଡଲଫିନକୁ ଏକାଦି କ୍ରମେ କିଛି ଦିନ ପାଇଁ ଗୋଟିଏ ଟାଙ୍କିରେ ଛାଡ଼ିଦେଲେ । ସେମାନଙ୍କ ବନ୍ଧୁତା ହେଲା ଏବଂ ସେଥିସଙ୍ଗେ ସମକାମୀତା ବଢ଼ିଲା । ଏହା ପରେ ମ୍ୟାକ୍‌ବ୍ରାଇଡ଼ ଓ ହବ ସେଇ ଟାଙ୍କିରେ ଦୁଇଟି ପୂର୍ଣ୍ଣ ଯୌବନା ସ୍ତ୍ରୀ ଡଲଫିନକୁ ଛାଡ଼ିଲେ । ପ୍ରଥମ ଅବସ୍ଥାରେ ପୁରୁଷ ଦୁଇଟି ନିଜକୁ ନେଇ ମତ୍ତ ରହିଲେ ଏବଂ ସ୍ତ୍ରୀଙ୍କ ପ୍ରତି କୌଣସି ବିଶେଷ ଆକର୍ଷଣ ବୋଧ କଲେ ନାହିଁ । ପରେ ଯେବେ ମିଳନର ଋତୁ ଆସିଲା, ଯଦି କୌଣସି ପୁରୁଷ ସ୍ତ୍ରୀ ସହ ମିଳିତ ହେବା ପାଇଁ ଆଗ୍ରହୀ ହେଲା, ଅନ୍ୟ ପୁରୁଷଟି ସେ ମିଳନରେ ବାଧା ଉପୁଜେଇଲା ପରେ ଅବଶ୍ୟ ଦୁଇଟି ପୁରୁଷ ସ୍ତ୍ରୀ ସହ ମିଳିତ ହୋଇଥିଲେ ।

ଅନ୍ୟ ପ୍ରାଣୀ ସହ ମଣିଷର ଯୌନତା ଏବଂ ସେମାନଙ୍କ ସହ ଅପାକୃତ ମିଳନ ନିଶ୍ଚିତ

ଭାବେ ବିକୃତ ରୁଚିର ପରିଚାୟକ । ତଥାପି ଅନେକ ପୌରାଣିକ ଉପାଖ୍ୟାନ, ଲୋକକଥାମାନଙ୍କରେ ଅପ୍ରାକୃତ ସହବସ୍ଥାନ ପରେ ସେଥିରୁ ସନ୍ତାନ ଜନ୍ମ ହୋଇଛି । ଗ୍ରୀକ୍ ଲୋକକଥାର ଅନ୍ୟତମ ନାୟୀକା ଲିଡ଼ାର ହଂସ ସହ ରମଣର ଚିତ୍ର ଅନେକ ଚିତ୍ରକରଙ୍କ ଏକ ପ୍ରିୟ ବିଷୟ । ଆଫ୍ରିକାର ବହୁ ଲୋକକଥାରେ ମଣିଷ ଓ ବାନର ବା ମଣିଷ ଓ ସାପର ମିଳନରୁ ଜାତ ସନ୍ତାନ ଦଳର ଶତ୍ରୁ ହୋଇଛି ବା ଦସ୍ୟୁ ହୋଇ କୁକାର୍ଯ୍ୟମାନ କରୁଛି । ଆଜି ମଣିଷର ବିଚାରରେ ଏ ଧରଣର ସହାବସ୍ଥାନ ଏକ ଘୃଣ୍ୟ ଅପରାଧ । ଉନବିଂଶ ଶତାବ୍ଦୀରେ ଆମେରିକାରେ ଏ ଧରଣର ଘୃଣ୍ୟ ଅପରାଧ କରୁଥିବା ବ୍ୟକ୍ତିଙ୍କୁ ଫାଶୀ ଦିଆ ଯାଉଥିଲା । ସ୍ୱଜାତୀୟ ବନ୍ଧୁ ବା ବାନ୍ଧବୀର ଅନୁପସ୍ଥିତିରେ ଅନ୍ୟ ଜାତୀୟ ପ୍ରାଣୀ ସହ ଶାରୀରିକ ସୁଖ ଆଦାନ ପ୍ରଦାନରେ ପଶୁ କୁଳରେ ସେଭଳି ବାଧା ନିଷେଧ ନାହିଁ, ବା ତାହା ସେଭଳି ଘୃଣ୍ୟ ଅପରାଧ ମଧ୍ୟ ନୁହେଁ । ଆବଦ୍ଧ ପରିବେଶରେ ରହୁଥିବା ବାବୁନ, ଓରାଂଓଟାଂ, ଗିବନ , ଆଦି ବାନର ଏକ ଅନ୍ୟ ସହ ମିଳିତ ହୁଅନ୍ତି, ଗଧ ଓ ଘୋଡ଼ାର ମିଳନରୁ ଜାତ ଖଚ୍ଚର ପ୍ରାଣୀକୁଳରେ ଏକ ବ୍ୟତିକ୍ରମ ହେଲେ ହେଁ ନୂତନ ନୁହେଁ । ବିହଙ୍ଗ କୁଳରେ ଅନ୍ୟ ଜାତିର ମିଳନ ମଧ୍ୟ ବିରଳ ନୁହେଁ । ଉଡ଼ ଡକ୍(wood duck), ମ୍ୟାନଡାରିନ ଡକ(mandarian duck) ମଧ୍ୟରେ, ବିଭିନ୍ନ ଜାତିର ଶୁଆମାନଙ୍କ ମଧ୍ୟରେ ମିଳନ ସାଧାରଣତଃ ଆବଦ୍ଧ ପରିବେଶରେ ଅଧିକ ଲକ୍ଷ୍ୟ କରାଯାଏ । ତେବେ ଗୋଟିଏ କଥା ମନେ ରଖିବାକୁ ହେବ ଅପ୍ରାକୃତ ମିଳନ ମଣିଷ ଯେଉଁଠି ଦେଖିଛି ସେଠାରେ ହୁଏତ ରହିଛି ଆବଦ୍ଧ ପରିବେଶ ବା ଅସ୍ୱାଭାବିକ ପାରିପାର୍ଶ୍ୱିକ ଅବସ୍ଥା ତେଣୁ ଏ ସମସ୍ତ ଅବସ୍ଥାରେ ପ୍ରାଣୀର ସ୍ୱାଭାବିକ ବ୍ୟବହାରଠାରୁ ବ୍ୟତିକ୍ରମ ହେବା ସ୍ୱାଭାବିକ ।

ପ୍ରାଣୀର ଯେଉଁ ବ୍ୟବହାରକୁ ଆମେ ଭାବୁଛୁ କୁରୁଚିପୂର୍ଣ୍ଣ ବା ବିକୃତ, ଯଦି ସେ ବ୍ୟବହାରର ଉଦ୍ଦେଶ୍ୟ ଖୋଜାଯାଏ ତେବେ ଦେଖାଯିବ ଏ ସମସ୍ତ ବ୍ୟବହାରର ଗୋଟିଏ ମାତ୍ର ଉଦ୍ଦେଶ୍ୟ ତାହା ହେଉଛି ବଂଶରକ୍ଷା । ନିଜର ଅସ୍ତିତ୍ୱ ବଜାୟ ପାଇଁ ବଂଶବୃଦ୍ଧି ଅପରିହାର୍ଯ୍ୟ । ତେଣୁ ପ୍ରକୃତି ବଂଶବୃଦ୍ଧି କ୍ରିୟା ସହ ଯୋଗ କରିଛି ଏକ ଧରଣର ଶାରୀରିକ ତଥା ମାନସିକ ତୃପ୍ତି ଯାହାକୁ ଇଂରାଜୀରେ ଆମେ କହୁ ଅର୍ଗାଜମ୍ (Orgasm) ବା ରତିତୃପ୍ତି ।

ରତିତୃପ୍ତିର କୌଣସି ନିର୍ଦ୍ଦିଷ୍ଟ ସଂଜ୍ଞା ନାହିଁ । କେଉଁ ପ୍ରାଣୀ କେଉଁ ଅବସ୍ଥାରେ ଏବଂ କେଉଁ ଉପାୟରେ ଏହି ତୃପ୍ତି ପାଇଥାଏ । ତାହାର ଗୋଟିଏ ଉତ୍ତର ପ୍ରାଣୀ ବ୍ୟବହାର ବିଜ୍ଞାନୀମାନେ ଏଯାଏଁ ପାଇ ନାହାନ୍ତି । ପୁରୁଷମାନଙ୍କଠି ଏହାର ଗୋଟିଏ ସରଳ ଉତ୍ତର ହେଉଛି ଶୁକ୍ରାଣୁ ଉତ୍କ୍ଷେପଣ ପରେ ପୁରୁଷ ଏକ ଧରଣର ତୃପ୍ତି ପାଇଥାଏ ମାତ୍ର ସ୍ତ୍ରୀମାନଙ୍କଠି ଏ ତୃପ୍ତିର ସଂଜ୍ଞା ଭିନ୍ନ ଭିନ୍ନ ପ୍ରାଣୀମାନଙ୍କ ପାଇଁ ଭିନ୍ନ ।

ମନରେ ପ୍ରଶ୍ନ ହୁଏ ସ୍ତ୍ରୀ ମାଛ କ'ଣ ପାଣିରେ ଅଣ୍ଡା ଛାଡ଼ିଲା ବେଳେ ସୁଖ ପାଏ ? ସାଲାମେଣ୍ଡାର (ଉଭୟଚର) ସ୍ତ୍ରୀ ନିଜ କ୍ଲୋଆଙ୍ଗରେ ଯେବେ ପୁରୁଷର ଶୁକ୍ରାଣୁ ଥଳି (ସ୍ପରମାଟୋଫୋର)କୁ ଶୋଷାଡ଼ି ନିଏ କ'ଣ ସୁଖ ପାଏ ? ସ୍ତ୍ରୀ ବେଙ୍ଗ ପିଠିରେ ପୁରୁଷ ବେଙ୍ଗ ଚଢ଼ି ନିଜର ସବଳ ଓ ବଳିଷ୍ଠ ବାହୁ ଦ୍ୱାରା ସ୍ତ୍ରୀର ପେଟକୁ ଚାପି ଧରେ ଏବଂ ସେ ଚାପ ଫଳରେ ସ୍ତ୍ରୀ ପେଟରୁ ଯେବେ ଅଣ୍ଡା ସହଜରେ ବାହରିଯାଏ, ସେତେବେଳେ ସେ କ'ଣ ରତିତୃପ୍ତି ପାଇଥାଏ ?



ମନ୍ଦିର ଗାତ୍ରରେ ଖୋଦିତ
ଆଲିଙ୍ଗନବଦ୍ଧ ପୁରୁଷ ଓ ସ୍ତ୍ରୀ

ଏହାର ଉତ୍ତରରେ କେବଳ ଗୋଟିଏ କଥା କହିହେବ, ''ଆମକୁ ଜଣା ନାହିଁ ।'' ତେବେ ଧୃନମାନ କରାଯାଇପାରେ ଯେଉଁ ପ୍ରାଣୀମାନଙ୍କରେ 'ସଙ୍ଗମ' ପରି କୌଣସି କ୍ରିୟା ନାହିଁ ସେଠାରେ ମିଳନ ପୂର୍ବେ ରତିକ୍ରିୟା ଓ ତା'ର ଆନୁସଙ୍ଗିକ ବ୍ୟବହାର ନିଶ୍ଚିତ ଭାବେ ରତିତୃପ୍ତିର ଏକ ଅଙ୍ଗ ।

ଶରୀର ବିଜ୍ଞାନୀ ଓ ସ୍ନାୟୁ ବିଜ୍ଞାନୀମାନେ ମନେ କରନ୍ତି ରତି ତୃପ୍ତି ହେଉଛି ଏଭଳି ଏକ ତୃପ୍ତି ଯାହା ପ୍ରାଣୀ ସମସ୍ତ ଶରୀର ଓ ମନ ନେଇ ଉପଭୋଗ କରିଥାଏ । ଏହି ପ୍ରକ୍ରିୟା ଦ୍ୱାରା ଉଭୟ ଶରୀର ଓ ମନର ଚାପ(tension) ଖଲାସ ହୁଏ । ଏହି ପ୍ରକ୍ରିୟା ପରେ ଶରୀରର ମାଂସପେଶୀ ଶୀଥିଳ ହୁଏ । ରକ୍ତଚାପ ସାଧାରଣ ପର୍ଯ୍ୟାୟକୁ ଆସେ । ଶରୀରରେ କେବଳ ଛିଙ୍କିବା କ୍ରିୟାଟିକୁ ଛାଡ଼ି ଦେଲେ ଅନ୍ୟ କୌଣସି କ୍ରିୟାରେ ଶରୀରରୁ ଏଡ଼େ ସହଜରେ ଚାପ ଖଲାସ ହୁଏ ନାହିଁ ।

ରତି ତୃପ୍ତି ପୂର୍ବରୁ ଶରୀରରେ ଯେଉଁ ଚାପ ସୃଷ୍ଟି ହୁଏ ତା'ର ରହିଛି ବହୁ ବିବିଧତା । ଏଥିପାଇଁ ଶରୀରରେ ନିର୍ଦ୍ଦିଷ୍ଟ ସମ୍ବେଦନଶୀଳ ସ୍ଥାନମାନ ରହିଛି, କେତେକ ସ୍ତ୍ରୀ ପ୍ରାଣୀମାନଙ୍କ ଶରୀରରେ (ମଣିଷ ସମେତ) ରହିଛି କ୍ଲାଇଟୋରିସ ନାମକ ଏକ ଜଟିଳ ଅଙ୍ଗ । ଦେଖିବାକୁ ପୁରୁଷାଙ୍ଗର ଏ କ୍ଷୁଦ୍ର ସଂସ୍କରଣ ହେଲେ ଦକ୍ଷିଣ ଆମେରିକାର କିଛି ସ୍ପାଇଡ଼ର ମାଙ୍କଡ଼ ଓ କେତେକ ବିଲେଇ ଓ ହାଏନା ଆଦି ପ୍ରାଣୀର କ୍ଲାଇଟୋରିସର ଆକାର ବେଶ୍ ବଡ଼ । ହଠାତ୍ ଦେଖିଲେ ସ୍ତ୍ରୀ ପୁରୁଷ ବାଛିବା କଷ୍ଟ । କ୍ଲାଇଟୋରିସର ବିବର୍ତ୍ତନ ସମ୍ପର୍କରେ ବିଜ୍ଞାନୀମାନେ ବିଶେଷ ତଥ୍ୟ ପାଇ ନାହାନ୍ତି । ତେବେ ସ୍ତନ୍ୟପାୟୀ କୁଳରେ ବିଶେଷ କିଛି ପ୍ରଜାତି ଏହି ଅଙ୍ଗଟିକୁ ଧାରଣ କରିଛନ୍ତି । ଚାପ ଖଲାସ ପରେ ପୁରୁଷାଙ୍ଗ ପରି କ୍ଲାଇଟୋରିସ ମଧ୍ୟ ଶୀଥିଳ ହୋଇଯାଏ । ରତିତୃପ୍ତିର ପ୍ରକାଶ ବିଭିନ୍ନ ପ୍ରାଣୀ ବିଭିନ୍ନ ଉପାୟରେ ପ୍ରକାଶ କରିଥାନ୍ତି । ବିଲେଇ ରତିତୃପ୍ତି ପରେ ଶରୀରକୁ ବିଭିନ୍ନ ଭଙ୍ଗୀରେ ବଙ୍କେଇ ଚଟାଣରେ ଗଡ଼ିଯାଏ । ବାଘ, ସିଂହ ମଧ୍ୟ ଚଟାଣରେ ଗଡ଼ି ଯାଆନ୍ତି । ମୂଷା ଜାତୀୟ ପ୍ରାଣୀ ରତିତୃପ୍ତି ପରେ ହାଲିଆ ହୋଇ ଶୋଇପଡ଼ନ୍ତି । ଦେଖିଲେ ମନେ ହେବ ସତେ ଅବା ସେମାନେ ମୃତ । ଗାଈ ଆଦି ଗବାଦି ପଶୁ ଘଣ୍ଟାଏ ଯାଏ ନିସ୍ତବ୍ଧ ହୋଇ ଠିଆ ହୋଇଥାନ୍ତି । ଘୋଡ଼ା ଦମ୍ପତି ରତିତୃପ୍ତି ପରେ ଏକ ଅନ୍ୟକୁ ଦାନ୍ତରେ ଧୀରେ ଧୀରେ କାମୁଡ଼ି ଦିଅନ୍ତି । କେତେକ ହରିଣ ଶିଙ୍ଗ ଦ୍ୱାରା ଧୀରେ ଧୀରେ ସ୍ତ୍ରୀର ପିଠି କୁଣ୍ଡେଇ ଦିଅନ୍ତି ।

# ସୃଷ୍ଟିଛଡ଼ା ପ୍ଲାଟିପସ୍

୧୭୯୯ ମସିହା କଥା । ବ୍ରିଟିଶ ଯାଦୁଘର ଅଷ୍ଟ୍ରେଲିଆର ହକ୍ସବେରୀ ସପ୍ଲାୟାର୍ସ କମ୍ପାନୀଠାରୁ ଗୋଟିଏ ଅଦ୍ଭୁତ ଜନ୍ତୁର ଛାଲ ପାଇଲେ । ଯାଦୁଘରର ପ୍ରାଣୀବିଜ୍ଞାନୀମାନେ ଛାଲଟିକୁ ପରୀକ୍ଷା କଲେ: ସେମାନେ ଦେଖିଲେ ଛାଲଟିରେ ରହିଛି ଛୋଟ ଛୋଟ ଚିକ୍କଣ ଭେଲଭେଟ ପରି ବାଳ, ରଙ୍ଗ ମାଟିଆ, ଚାରୋଟି ଗୋଡ଼ ଆଉ ଗୋଟିଏ ନେଉଳ ଲାଙ୍ଗୁଡ଼ ପରି ଲାଙ୍ଗୁଡ଼ । ପ୍ରାଣୀ ବିଜ୍ଞାନୀମାନେ ନିଶ୍ଚିତ ହେଲେ ଛାଲଟି ନିଶ୍ଚିତ କୌଣସି ଏକ ସ୍ତନ୍ୟପାୟୀର ହେଲେ ବାଉ ସାଧିଲା ପ୍ରାଣୀଟିର ମୁଣ୍ଡ ଯାହା ଥିଲା ଗୋଟିଏ ବତକ ପରି । ବୈଜ୍ଞାନିକମାନେ ଧନ୍ଦାରେ ପଡ଼ିଲେ, ତେବେ କ'ଣ ପ୍ରାଣୀଟି ଗୋଟିଏ ବିହଙ୍ଗ ? କେତେକ କହିଲେ ନିଶ୍ଚେ ହକ୍ସବେରୀ ସପ୍ଲାୟାର୍ସ ଅଧିକ ପଇସା ଲୋଭରେ ବତକର ମୁଣ୍ଡ ସହ ସ୍ତନ୍ୟପାୟୀର ଶରୀରକୁ ସିଲେଇ କରି ପଠେଇ ଦେଇଛନ୍ତି । ଏହିପରି ସିଲେଇ ହୋଇଥିବା ଛାଲ ପୂର୍ବେ ଯାଦୁଘର କର୍ମକର୍ତ୍ତାମାନେ ପାଇଛନ୍ତି । ଏ କଥା ଶୁଣି ହକ୍ସବେରୀ ସପ୍ଲାୟାର୍ସ ଛାଲ ନ ପଠେଇ ଗୋଟିଏ ସମ୍ପୂର୍ଣ୍ଣ ପ୍ରାଣୀକୁ ସଂରକ୍ଷଣ କରି ଲଣ୍ଡନକୁ ପଠେଇଦେଲେ, ଏଥର ବିଜ୍ଞାନୀମାନଙ୍କ ସନ୍ଦେହ ଦୂର ହେଲା । ପ୍ରାଣୀଟିର ନାମକରଣ ହେଲା ଡ଼କ ବିଲଡ଼ ପ୍ଲାଟିପସ । ସୃଷ୍ଟିଛଡ଼ା ଏହି ପ୍ରାଣୀଟିରେ ସ୍ତନ୍ୟପାୟୀ, ସରିସୃପ ଓ ବିହଙ୍ଗର ଚରିତ୍ରମାନ ମିଳିମିଶି ପ୍ରକାଶ ପାଇଛି । ଡାଇନୋସରସମାନେ ଯେବେ ପୃଥିବୀରେ ରାଜୁତି କରୁଥିଲେ ସେଇ ସମୟରେ ପ୍ଲାଟିପସ ପୃଥିବୀକୁ ଆସିଥିଲା । ସରୀସୃପ ବଂଶୋଦ୍ଭବ ପ୍ଲାଟିପସର ବୈଚିତ୍ର ଆଜିକୁ କୋଟି କୋଟି ବର୍ଷ ହେଲାଣି । ଏହା ଯେଉଁ ସମସ୍ତ ଚରିତ୍ରମାନ ନେଇ ପୃଥିବୀକୁ ଆସିଥିଲା କୋଟି ବର୍ଷରେ ମଧ ସେ ଚରିତ୍ରର ବିଶେଷ ପରିବର୍ତ୍ତନ ହୋଇନାହିଁ । ଏଣୁ ପ୍ରାଣୀ ବିଜ୍ଞାନୀମାନେ ପ୍ଲାଟିପସକୁ କହନ୍ତି ''ଲିଭିଂଫସିଲ'' ବା ଜୀବନ୍ତ ଜୀବାଶ୍ମ ।

ପ୍ଲାଟିପସର ଶରୀର ଉପରେ ରହିଛି ସ୍ତନ୍ୟପାୟୀ ପରି କେଶ । ଏହା ବିହଙ୍ଗ ଓ ସରୀସୃପ ପରି ଅଣ୍ଡା ଦିଏ । ମଳଦ୍ୱାର ପରିବର୍ତ୍ତେ ପ୍ଲାଟିପସର ରହିଛି ବିହଙ୍ଗ ବା ସରୀସୃପ ପରି କ୍ଲୋଆକା । ପ୍ଲାଟିପସ ଏବଂ ଏହାର ସମଗୋତ୍ରୀୟ ଇକନିଡ଼ା ଏକମାତ୍ର ସ୍ତନ୍ୟପାୟୀ ପ୍ରାଣୀ ଯେଉଁମାନେ ଅଣ୍ଡା ଦେଇଥାନ୍ତି । ପ୍ଲାଟିପସ ଜାତୀୟ ପ୍ରାଣୀର ଏହି ବିଚିତ୍ର ଗୁଣ ସମୂହ ଯୋଗୁଁ



ବିଜ୍ଞାନୀମାନେ ସ୍ତନ୍ୟପାୟୀ କୁଳରେ ସେମାନଙ୍କୁ ଏକ ବିଶେଷ ଗୋଷ୍ଠୀ ବା ସବ୍ କ୍ଲାସ୍‌ରେ ସ୍ଥାପନ କରିଛନ୍ତି, ଯାହାକୁ ଆମେ ପ୍ରୋଟୋଥେରିଆ ବା ମନୋଟ୍ରିମାଟା କହିଥାଉ ।

ପ୍ଲାଟିପସ ନଦୀ ତଟମାନଙ୍କରେ ଗାତ କରି ଅଣ୍ଡା ଉଷୁମ କରେ । ଅଣ୍ଡା ଉଷୁମ ବେଳେ ପୁରୁଷ ସେ ଅଞ୍ଚଳକୁ ଯାଏ ନାହିଁ । ଅଣ୍ଡା ଫୁଟି ଛୁଆ ବାହାରିଲେ, ସେଗୁଡ଼ିକର ସମ୍ପୂର୍ଣ୍ଣ ବିକାଶ ହେବାକୁ ଆହୁରି କିଛି ଦିନ ସମୟ ଲାଗେ । ସେଇ ସମୟରେ ମା' ଛୁଆଗୁଡ଼ିକୁ ଗାତ ଭିତରେ ରଖି ତା' ମୁହଁ ପାଖରେ ଜଗି ବସେ । ପ୍ଲାଟିପସର ସମଗୋତ୍ରୀୟ ଇକନିଡ଼ାର ଛୁଆ ମଧ ଜନ୍ମ ହେବାର ଦି ତିନି ମାସ ଯାଏଁ ମା' ପେଟ ତଳେ ଥିବା ଥଳି ଭିତରେ ରହି ବୃଦ୍ଧିପ୍ରାପ୍ତ ହୁଏ । ଛୁଆର ସମ୍ପୂର୍ଣ୍ଣ ବୃଦ୍ଧି ହେଲା ପରେ ଯାଇ ସେମାନେ ପଦାକୁ ଆସନ୍ତି ।

ପ୍ଲାଟିପସ ପୁରୁଷର ଜନନାଙ୍ଗ ନାହିଁ । ମିଳନ ବେଳେ ପ୍ଲାଟିପସ ପୁରୁଷ ପଛ ଗୋଡ଼ରେ ଥିବା ଏକ ମୁନିଆଁ ନଖ ପରି ସ୍ପର ସାହାଯ୍ୟରେ ସ୍ତ୍ରୀ ପେଟ ତଳ ଚମଡ଼ାକୁ ଫୋଡ଼ିଦିଏ । ଏହି ଫୋଡ଼ା ଦ୍ୱାରା ସ୍ତ୍ରୀ ଉତ୍ତେଜିତ ହୁଏ, ତେବେ ଏହାର ସତ୍ୟାସତ୍ୟ ଏଯାଏ ପ୍ରମାଣିତ ହୋଇନାହିଁ ।

ପ୍ରୋଟୋଥେରିଆଠୁ ସାମାନ୍ୟ ଉନ୍ନତ ଅନ୍ୟ ଏକ ସ୍ତନ୍ୟପାୟୀ ଗୋଷ୍ଠୀ ମେଟାଥେରିଆ । ମେଟାଥେରିଆ ବା ମାରସୁପିଲିଆ ଗୋଷ୍ଠୀର ପ୍ରାଣୀ ପ୍ରଧାନତଃ ଅଷ୍ଟ୍ରେଲିଆ ଓ ଦକ୍ଷିଣ ଆମେରିକାରେ ଦେଖାଯାଆନ୍ତି । କଙ୍ଗାରୁ, କୋଲାବା, ବିଅର, ଅପୋସମ ଆଦି ପ୍ରାଣୀ ଏହି ଗୋଷ୍ଠୀର ଅନ୍ତର୍ଭୁକ୍ତ । ଏହି ଗୋଷ୍ଠୀର ବିଶେଷତ୍ୱ ଜନ୍ମବେଳେ ଛୁଆ ପ୍ରାୟ ଭ୍ରୁଣାବସ୍ଥାରେ ଥାଏ । ଜନ୍ମ ପରେ ପରେ ମା' ଛୁଆଗୁଡ଼ିକୁ ପେଟତଳେ ଥିବା ଏକ ଥଳି ଭିତରକୁ ନେଇନିଏ । ଥଳି ଭିତରେ ରହିଛି ମା'ର ସ୍ତନ୍ୟାଗ୍ର । ଛୁଆଗୁଡ଼ିକ ପ୍ରାୟ ସଙ୍ଗେ ସଙ୍ଗେ ସ୍ତନ୍ୟାଗ୍ରରେ ନିଜ ମୁହଁକୁ ଲଗେଇ ଦିଅନ୍ତି । ମା'ର ସ୍ତନ ପାନକରି ଥଳି ଭିତରେ ଛୁଆଗୁଡ଼ିକର ବୃଦ୍ଧି ହୁଏ ।

ସ୍ତନ୍ୟପାୟୀ କୁଳର ଅନ୍ୟ ଗୋଷ୍ଠୀ (ସାବ୍‌କ୍ଲାସ) ଇଉଥେରିଆ । ପ୍ରାକୃତିକ ପରିବେଶ ସହ ମନେଇବାର ବୈଚିତ୍ର୍ୟରେ ଇଉଥେରିଆର ସମକକ୍ଷ ପ୍ରାଣୀ ଆଉ ନାହିଁ କହିଲେ ଚଳେ । ଜଳରେ, ସ୍ଥଳରେ, ଆକାଶରେ, ପାହାଡ଼ ଉପରେ, ମରୁଭୂମିରେ ଏପରିକି ଅନ୍ଧାରୀ ଗୁହା ମଧ୍ୟରେ ଇଉଥେରିଆ ଗୋଷ୍ଠୀର ପ୍ରାଣୀ ଦେଖିବାକୁ ମିଳେ । ଏହି ଗୋଷ୍ଠୀର ବିଶେଷତ୍ୱ ହେଉଛି ମା' ଓ ସନ୍ତାନର ସମ୍ବନ୍ଧ । ଡିମ୍ବାଣୁ ନିଷିକ୍ତ ହେଲା ପରଠୁ ତାହାର ବୃଦ୍ଧି ମା'ର ଜରାୟୁ ମଧ୍ୟରେ ହୋଇଥାଏ । ଏହି ସମୟରେ ଭ୍ରୁଣ ଓ ମା' ମଧ୍ୟରେ ଏକ ଯୋଗସୂତ୍ର ସ୍ଥାପିତ ହୁଏ । ଯାହାକୁ ଇଂରାଜୀରେ ପ୍ଲାସେନଟା କୁହାଯାଏ । ପ୍ଲାସେନଟାରୁ ଏହି ଗୋଷ୍ଠୀର ଅନ୍ୟ ଏକ ନାଁ ପ୍ଲାସେନଟାଲ ମ୍ୟାମେଲ । ପ୍ଲାସେନଟା ସାହାଯ୍ୟରେ ଭ୍ରୁଣ ମା'ଠୁ ଖାଦ୍ୟ, ଅକ୍ସିଜେନ ଓ ବୃଦ୍ଧି ପାଇ ଅନ୍ୟ ଆବଶ୍ୟକୀୟ ପଦାର୍ଥମାନ ପାଇଥାଏ । ଜରାୟୁର ଏକ ସୁରକ୍ଷିତ ପରିବେଶ ମଧ୍ୟରେ ଭ୍ରୁଣର ବୃଦ୍ଧି ହୁଏ । ଜନ୍ମ ପରେ ପରେ ସନ୍ତାନ ମା' ବକ୍ଷରୁ ନିର୍ଗତ ଅମୃତଧାରା ପାନ କରି ବଡ଼ ହୁଏ । ସନ୍ତାନ ଲାଳନରେ ଇଉଥେରିଆ ଗୋଷ୍ଠୀ ପ୍ରାଣୀକୁଳରେ ଚରମ ଉତ୍କର୍ଷତା ଦେଖାଇଛନ୍ତି । ମା' ସନ୍ତାନର ସମ୍ପର୍କ ଅତି ନିବିଡ଼ ହୋଇଥିବାରୁ ଇଉଥେରିଆ ଗୋଷ୍ଠୀର ଅସ୍ତିତ୍ୱ ସଙ୍କଟ ନାହିଁ କହିଲେ ଚଳେ । ଯଦିଓ ଆଧୁନିକ ମାନବ ସଭ୍ୟତାକୁ ସାମନା ନକରି ପାରି ଅନେକ ଇଉଥେରିଆ ଅବଲୁପ୍ତ ହୋଇଗଲେଣି ।

# ବାଦଶାହୀ ହାରେମ

ନାରୀ ପୁରୁଷ ମଧ୍ୟରେ ଯେତେ ପ୍ରକାରର ସମ୍ବନ୍ଧ ହୋଇପାରେ ସେ ସମସ୍ତ ସମ୍ବନ୍ଧ ଇତଃସ୍ତତଃ ଗୋଷ୍ଠୀର ସ୍ତନ୍ୟପାୟୀମାନଙ୍କ ଭିତରେ ଦେଖାଯାଏ । କେତେକ ପୁରୁଷ ଏକ ଦାର ପ୍ରିୟ, କେତେକ ବହୁ ସ୍ତ୍ରୀ ଗହଣରେ ରହିବାକୁ ଭଲ ପାଆନ୍ତି । କେତେକ କେବଳ ମିଳନର ସମୟ ଟିକକ ଛାଡ଼ି ଦେଲେ ସ୍ତ୍ରୀ ସଂସର୍ଗରେ ରହିବାକୁ ପସନ୍ଦ କରନ୍ତି ନାହିଁ ।

ସାଧାରଣତଃ ବିଲେଇ ଜାତୀୟ ବାଘ ଏକୁଟିଆ ରହିବାକୁ ଭଲ ପାଏ ହେଲେ, ସିଂହ ପିଲା ଛୁଆ ଧରି ଗୋଟିଏ ପରିବାରରେ ରହିବାକୁ ପସନ୍ଦ କରେ । ବାଘ ଛୁଆ ମା'ର ସ୍ନେହ ପାଇ ବଡ଼ ହୁଏ ହେଲେ ସିଂହ ଶାବକ ଉଭୟ ପିତାମାତା ଓ ସାବତ ମା'ମାନଙ୍କ ଗହଣରେ ବଡ଼ ହୋଇଥାଏ ।

ଖୁରା ଥିବା ଗଧ, ଘୋଡ଼ା, ସମ୍ବର, ହରିଣ ଆଦି ପ୍ରାଣୀ ଦଳବଦ୍ଧ ହୋଇ ରୁହନ୍ତି । ଏମାନଙ୍କ ଦଳବଦ୍ଧ ହୋଇ ରହିବାର ଏକମାତ୍ର ଉଦ୍ଦେଶ୍ୟ ପ୍ରତିରକ୍ଷା ବା ଆତ୍ମରକ୍ଷା । ବନ୍ୟ ଘୁଷୁରୀ, ବାରହା, ହରିଣ ଆଦି ପ୍ରାଣୀ ମିଳନ ସମୟରେ ଛୋଟ ଛୋଟ ଦଳରେ ବିଭକ୍ତ ହୋଇ ପାଖାପାଖି ରୁହନ୍ତି । କେତେକ ଘୋଡ଼ା ମିଳନ ଋତୁ ପୂର୍ବରୁ ପୁରୁଷ ଦଳ ଓ ସ୍ତ୍ରୀ ଦଳରେ ଭାଗ ଭାଗ ହୋଇଯାଆନ୍ତି । ଏହା ପରେ ପୁରୁଷ ଘୋଡ଼ାମାନଙ୍କ ଭିତରେ ସ୍ତ୍ରୀଙ୍କ ମନ ତୋଷିବା ପାଇଁ ଏକ ଧରଣର ମିଛି ମିଛିକା ଲଢ଼େଇ ହୁଏ । କାରଣ ଏ ଲଢ଼େଇରେ ସାଧାରଣତଃ କେହି ଆହତ ହୁଅନ୍ତି ନାହିଁ । ଲଢ଼େଇର ଉଦ୍ଦେଶ୍ୟ ପ୍ରତିବର୍ଷ ପୁରୁଷ ନିଜର ସାମର୍ଥ୍ୟ ଓ ଶୌର୍ଯ୍ୟ ପ୍ରଦର୍ଶନ କରି ସ୍ତ୍ରୀର ଦୃଷ୍ଟି ଆକର୍ଷଣ କରେ ଓ ଦଳପତି ବା ଦଳରେ ଉଚ୍ଚ ପାହ୍ୟା ରଖିବାର ସାମର୍ଥ୍ୟ ବଜାୟ ରଖେ ।

ଘୋଡ଼ା ସମ୍ବର ଆଦିର ସାମାଜିକ ଜୀବନ ଅପେକ୍ଷା ଯୌନ ଜୀବନ ଅଧିକ ଜଟିଳ । ନିଜର ଶୌର୍ଯ୍ୟ ଓ ବଳ ଉପରେ ନିର୍ଭର କରି ଦଳମାନଙ୍କରେ ବିଭିନ୍ନ ପାହ୍ୟା ବା ଥାକ ଥାଏ । ଦଳର ଉଚ୍ଚ ପାହ୍ୟାର ପୁରୁଷ ଯଦି କେବେ ତଳ ପାହ୍ୟା ସ୍ତ୍ରୀ ପ୍ରତି ଆସକ୍ତ ହୁଏ ତେବେ ତଳ ପାହ୍ୟା ସ୍ତ୍ରୀଟିର ସାମାଜିକ ସ୍ଥିତିରେ ଉନ୍ନତି ହୁଏ । ଅପର ପକ୍ଷରେ ନିମ୍ନ ପାହ୍ୟାର ପୁରୁଷ ଉଚ୍ଚ ପାହ୍ୟାର ସ୍ତ୍ରୀ ସହ ମିଳିତ ହେବାର ସୁଯୋଗ ପାଏ ନାହିଁ । ଯଦି କେବେ ଏପରି ହୁଏ ତେବେ ସେ ପରକୀୟା ପ୍ରେମର କୌଣସି ସାମାଜିକ ଦାୟବଦ୍ଧତା ନାହିଁ ।

ଉଗାଣ୍ଡାରେ ରହୁଥିବା ୱାଟର ବକ (Water Buck) ହରିଣର ପୁରୁଷ ଓ ସ୍ତ୍ରୀ ଅଲଗା ଅଲଗା ଦଳରେ ରୁହନ୍ତି । ମିଳନର ସମୟ ହେଲେ ପୁରୁଷର ଦଳ ଖଣ୍ଡ ଖଣ୍ଡ ହୋଇଯାଏ । ପୁରୁଷମାନେ ନିଜର ଖଣ୍ଡେ ଖଣ୍ଡେ ଇଲାକା ନେଇ ସେଇ ଇଲାକାରେ ରୁହନ୍ତି । ଇଲାକାର ଭାଗ ବଣ୍ଟରା ପୁରୁଷ ପୁରୁଷର ବଳବୀର୍ଯ୍ୟକୁ ନେଇ ହୋଇଥାଏ ସାଧାରଣତଃ । ବଳୁଆ ଓ ବୀର୍ଯ୍ୟବାନ



କସ୍ତୁରୀ ମୃଗ

ପୁରୁଷ ଇଲାକାର ସ୍ତ୍ରୀ ଦଳ ଯିବା ଆସିବା ବାଟ ବା ସେମାନଙ୍କ ପାଣି ପିଇବା ସ୍ଥାନମାନଙ୍କ ନିକଟରେ ହୋଇଥାଏ । ମିଳନ ପାଇଁ ପୁରୁଷ ୱାଟର ବକ ନିଜ ଇଲାକା ପାଖରେ ଠିଆ ହୋଇ ସ୍ତ୍ରୀ ପାଇଁ ଅପେକ୍ଷା କରେ । ଏହି ସମୟରେ ସ୍ତ୍ରୀ ବିଭିନ୍ନ ପୁରୁଷର ଇଲାକାରେ ବୁଲି ଆସେ । ପରେ ସ୍ତ୍ରୀ ତା'ର ପସନ୍ଦ ମୁତାବକ ପୁରୁଷକୁ ପ୍ରେମ ନିବେଦନ କରେ । ବେଳେବେଳେ ଗୋଟିଏ ଗୋଟିଏ ସ୍ତ୍ରୀ ଏକାଧିକ ପୁରୁଷର ଇଲାକାରେ ପଶି ନିଜର ଭାବ ବିନିମୟ କରିଥାଏ । ମିଳନ ପରେ ପୁରୁଷମାନେ ପୁଣି ଏକଜୁଟ ହୋଇଯାଆନ୍ତି ପରେ ପରେ ସ୍ତ୍ରୀମାନେ ଏକଜୁଟ ହୋଇ ନୂତନ ଘାସ ପଡ଼ିଆ ସନ୍ଧାନରେ ବାହାରି ପଡ଼ନ୍ତି ।

ବାବୁନ (Baboon) ଜାତୀୟ ମାଙ୍କଡ଼ ଦଳବଦ୍ଧ ହୋଇ ରୁହନ୍ତି । ଦଳଗୁଡ଼ିକ ଛୋଟ ଛୋଟ ପରିବାରକୁ ନେଇ ଗଠିତ । ପ୍ରତ୍ୟେକ ପରିବାରରେ ପୁରୁଷ, ସ୍ତ୍ରୀ ଓ ସେମାନଙ୍କ ପିଲାପିଲିଙ୍କୁ ନେଇ ଗଠିତ । ଝିଅ ବଡ଼ ହେଲେ ସେ କୌଣସି ଏକ ପରିବାରରେ ସାମିଲ୍ ହୋଇଯାଏ । ଏହାଛଡ଼ା ଦଳରେ କିଛି ଅବିବାହିତ ପୁରୁଷ ଥାଆନ୍ତି । ଦଳର ସବୁଠାରୁ ବଳୁଆ ପୁରୁଷ ଏକାଧିକ ସ୍ତ୍ରୀ ଗହଣରେ ଥାଏ ଆଉ ସବୁଠାରୁ ଦୁର୍ବଳ ପୁରୁଷର କେବଳ ଗୋଟିଏ ମାତ୍ର ସ୍ତ୍ରୀ ଥାଏ । ଦଳପତିଙ୍କ ଇଚ୍ଛା ହେଲେ ସେ ଅନ୍ୟର ସ୍ତ୍ରୀ ସହ ମିଳିତ ହୋଇଥାଏ । ମାତ୍ର ଦଳର ତଳ ପାହ୍ୟାରେ ଥିବା ପୁରୁଷ ଦଳପତିର ସ୍ତ୍ରୀ ସହ ରମଣ କରିପାରେ ନାହିଁ । ଦଳର ଅଭିଆଡ଼ି ପୁରୁଷ ସୁଯୋଗ ପାଇଲେ ଦଳପତିର ବା ଅନ୍ୟର ସ୍ତ୍ରୀ ସହ ମିଳିତ ହୁଏ କିନ୍ତୁ ଯଦି ଧରାପଡ଼ିଯାଏ ତେବେ ଦଳପତି ଦ୍ୱାରା ନିଗୃହିତ ହୁଏ । ବାବୁନ ସ୍ତ୍ରୀର ମିଳନର ସମୟ ହେଲେ ତା'ର ଜନନାଙ୍ଗ ଫୁଲି ଲୋହିତ ବର୍ଣ୍ଣର ହୋଇଯାଏ । ଲୋହିତ ବର୍ଣ୍ଣର ଜନନାଙ୍ଗ ଦେଖିଲେ ପୁରୁଷ କାମାର୍ତ୍ତ ହୁଏ ଓ ସ୍ତ୍ରୀ ସହ ମିଳିତ ହୁଏ । ଲୋହିତ ବର୍ଣ୍ଣ ପାଳଟ ଥିବା ସ୍ତ୍ରୀ ସହ କେବଳ ତା ସ୍ୱାମୀ ରମଣ କରିଥାଏ । ଅନ୍ୟ ସମୟରେ ଯେତେବେଳେ ଜନନାଙ୍ଗ ଲୋହିତ ବର୍ଣ୍ଣ ହୋଇ ନଥାଏ ସେତେବେଳେ ଅବିବାହିତ ପୁରୁଷ କ୍ଷଣିକ ପାଇଁ ସେ ସମସ୍ତ ସ୍ତ୍ରୀ ସହ ମିଳିତ ହୋଇଥାଏ ।



**ଆଫ୍ରିକାର ସିଂହ ପରିବାର**

ସମୁଦ୍ରରେ ରହୁଥିବା ସିଲ୍ ଆଦି ସ୍ତନ୍ୟପାୟୀ ଦଳବଦ୍ଧ ହୋଇ ରହନ୍ତି । କେବଳ ମିଳନର ସମୟ ଟିକକ ଛାଡ଼ି ଦେଲେ ସେମାନଙ୍କ ଭିତରେ କୌଣସି ପାରିବାରିକ ଦାୟବଦ୍ଧତା ନାହିଁ । ସେମାନେ ଏକାଠି ରହନ୍ତି, ଏକାଠି ଶିକାର କରନ୍ତି ଏବଂ ଏକାଠି ସନ୍ତାନ ଲାଳନ କରନ୍ତି ।

ସ୍ଥଳଭାଗର ବୃହତ୍ତମ ପ୍ରାଣୀ ହାତୀର ପାରିବାରିକ ଜୀବନ ଓ ସାମାଜିକ ଦାୟବଦ୍ଧତା ଅନ୍ୟ ବନ୍ୟ ପ୍ରାଣୀଙ୍କଠି ଦେଖାଯାଏ ନାହିଁ । ହାତୀମାନେ ଦଳବଦ୍ଧ ହୋଇ ରୁହନ୍ତି । କୋଡ଼ିଏ ତିରିଶ ବର୍ଷ ପୂର୍ବେ ଗୋଟିଏ ଗୋଟିଏ ଦଳରେ ୩୦ରୁ ୫୦ ହାତୀ ରହୁଥିଲେ । ସେଇ ସମସ୍ତ ଦଳରେ ମାଈ ହାତୀର ସଂଖ୍ୟା ଅଣ୍ଡିରା ହାତୀଠାରୁ ଯଥେଷ୍ଟ ଅଧିକ ରହୁଥିଲା । ଶିଶୁ ଓ ଜନନୀଙ୍କ ସଂଖ୍ୟା ଥିଲା ଦଳର ପଚାଶ ଶତାଂଶ । ଏକ ବା ଦୁଇ ବୟସ୍କ ପୁରୁଷ ବା ଦନ୍ତାଳ (Tusker) ଆଠରୁ ଦଶଟି ନବ ଯୌବନା କୁମାରୀ (Sarin) ତାଙ୍କ ଅପରିଣତ ପୁରୁଷକୁ ନେଇ ଗୋଟିଏ ଗୋଟିଏ ଦଳ ହେଉଥିଲା । ଏବେ ଦଳଗୁଡ଼ାକ ଛୋଟ ହୋଇ ଗଲାଣି ।

ହାତୀ ଗୋଟିଏ ଯାଗାରେ ସ୍ଥିର ହୋଇ ରୁହେ ନାହିଁ । ପର୍ଯ୍ୟଟନ କରିବା ସେମାନଙ୍କ ଜନ୍ମଗତ ଗୁଣ । ଗୋଟିଏ ଦିନରେ ହାତୀ ଦଳ ତିରିଶରୁ ପଚାଶ କିଲୋମିଟର ପର୍ଯ୍ୟନ୍ତ ପଥ ଅତିକ୍ରମ କରନ୍ତି । ପର୍ଯ୍ୟଟନ ସମୟରେ ହାତୀମାନେ ମଧ୍ୟାହ୍ନ ଓ ମଧ୍ୟରାତ୍ରୀରେ ଦୁଇ ଘଣ୍ଟାରୁ ତିନି ଘଣ୍ଟା ସୁଖ ନିଦ୍ରା ନିଅନ୍ତି । ପର୍ଯ୍ୟଟନ ବେଳେ ଦଳର ପରିଚାଳନା ଦଳର ବୟସ୍କ ସ୍ତ୍ରୀ ହାତୀ କରିଥାଏ ।

୧୬ରୁ ୨୦ ବର୍ଷ ଭିତରେ ପୁରୁଷ ହାତୀ ସ୍ତ୍ରୀ ପ୍ରତି ଆକୃଷ୍ଟ ହୁଏ । ଯୌବନର ପ୍ରାରମ୍ଭରେ ପୁରୁଷ ହାତୀ ଭୀଷଣ ପ୍ରେମ ପାଗଳ । ତେବେ ହାତୀର ସମ୍ଭୋଗ ଜୀବନ ଆରମ୍ଭ ହୁଏ ୨୦ ବର୍ଷ ପରେ । ସେଇ ସମୟରେ ହାତୀର ମସ୍ତ କ୍ଷରଣ ହୁଏ । ପୁରୁଷ ହାତୀର ଆଖି ଓ କାନ ମଝିରେ ଥିବା ମସ୍ତ ଗ୍ରନ୍ଥିରୁ ମସ୍ତ ନିର୍ଗତ ହୁଏ । ଏହି କ୍ଷରଣ ଦୁଇ ସପ୍ତାହରୁ ଏକ ମାସ ପର୍ଯ୍ୟନ୍ତ ହୋଇଥାଏ । ୩୫ରୁ ୪୫ ବର୍ଷ ଭିତରେ ସବୁଠାରୁ ଅଧିକ ମସ୍ତ କ୍ଷରଣ ହୁଏ । ୫୦ ବର୍ଷ ପରଠୁ

କ୍ଷରଣ କମି କମି କ୍ରମେ ବନ୍ଦ ହୋଇଯାଏ ।

ମସ୍ତ କ୍ଷରଣ ବେଳେ ହାତୀର ମିଜାଜ ଠିକ୍ ରୁହେ ନାହିଁ । ଦଳରେ ସ୍ୱାଭାବିକ ରିତୀରେ ହଠାତ୍ ସଙ୍ଗିନୀଟିଏ ପାଇବା ମୁଶକିଲ୍ । ଦଳର ପୂର୍ଣ୍ଣାଙ୍ଗ ହସ୍ତିନୀକୁ ସମ୍ଭୋଗର ଅଧିକାର କେବଳ ବ୍ରିଡିଂବୁଲ ବା ଦନ୍ତାଳର । ବ୍ରିଡିଂବୁଲ ନ ହେବାଯାଏ ପୁରୁଷ ହାତୀ ଲୁଚେଇ ଛପେଇ ମିଳିତ ହୋଇଥାଏ । ଏହି ଲୁଚା ଛପା ପ୍ରେମ ବେଳେ ପୁରୁଷ ପୂର୍ବରୁ ମିଳିତ ହେବାର ସ୍ଥାନ ଠିକ୍ କରିନିଏ । ଲୁଚା ଛପା ପ୍ରେମ ବେଳେ ପୁରୁଷ ରାତ୍ରିର ପ୍ରଥମ ବା ଦ୍ୱିତୀୟ ପ୍ରହରରେ ଯେବେ ଦଳର ଅନ୍ୟମାନେ ବିଶ୍ରାମ ନେଉଥାନ୍ତି ମିଳନର ସ୍ଥାନଠି ପହଞ୍ଚିଯାଏ, ପରେ ପରେ ପ୍ରିୟା ଦଳର ଅନ୍ୟମାନଙ୍କ ଅଲକ୍ଷ୍ୟରେ ସେଠାରେ ପହଞ୍ଚିଯାଏ । ହାତୀର ପୂର୍ବରାଗର ସ୍ଥାୟୀତ୍ୱ ଦୁଇ ତିନିଘଣ୍ଟା ହେଲେ ମିଳନର ସମୟ ତିନିରୁ ପାଞ୍ଚ ମିନିଟ । ଏହି ସମୟରେ ସ୍ତ୍ରୀ ଗୋଟିଏ ଗାତ ଭିତରେ ବସିଯାଏ । ପରେ ପୁରୁଷ ତା ସହ ମିଳିତ ହୁଏ । କେତେକ କହନ୍ତି ହାତୀ ପାଣି ଭିତରେ ମଧ୍ୟ ମିଳିତ ହୁଅନ୍ତି ।

ଗର୍ଭଧାରଣର ୨୦ରୁ ୨୨ ମାସ ପରେ ହସ୍ତିନୀ ପ୍ରସବ କରିଥାଏ । ପୋଷା ହାତୀଙ୍କଠି ଦେଖାଯାଇଛି ୨୦ ମାସ ପରର ଛୁଆ ମାଈ ହାତୀ ଓ ୨୨ ମାସ ପରର ଛୁଆ ଅଣ୍ଡିରା ହାତୀ ହୋଇଥାଏ । ନବଜାତକର ପରିଚର୍ଯ୍ୟା ବୟସ୍କା ଅଭିଜ୍ଞା ହସ୍ତିନୀ କରିଥାଏ । ଛୁଆ ଜନ୍ମପରେ ୩ରୁ ୪ ବର୍ଷ ଯାଏ ମା' ହାତୀ ଅନ୍ୟ ପୁରୁଷ ସହ ଘନିଷ୍ଠ ହୁଏ ନାହିଁ । ତେଣୁ ହାତୀ ଛୁଆ ୪/୫ ବର୍ଷ ଅନ୍ତରରେ ହୋଇଥାଏ । ଗୋଟିଏ ମା' ହାତୀ ୧୭/୧୮ ବର୍ଷରୁ ୬୦ ବର୍ଷ ଯାଏ ଜନ୍ମ କରିବାର କ୍ଷମତା ରଖିଥାଏ । ହାତୀର ଜାଆଁଳା ଶିଶୁ ହୁଏ ନାହିଁ । ଗୋଟିଏ ହାତୀ ତା ଜୀବଦଶାରେ ୮ରୁ ୧୦ଟି ଛୁଆ ଦେଇଥାଏ ।

# ବାଘର ପ୍ରେମ ଓ ବାତ୍ସଲ୍ୟ

ପୃଥିବୀର ଅନ୍ୟତମ ବ୍ୟାଘ୍ର ବିଶାରଦ ଜିମ୍ କରବେଟ (Jim Corbet) କହନ୍ତି ବାଘ ହେଉଛି ଜଙ୍ଗଲର ଭଦ୍ରଲୋକ (Gentle man of the forest) । ଏହାର କାରଣ ବାଘର ସାହସ ଆତ୍ମପ୍ରତ୍ୟୟ ତଥା ଅମାୟିକ ପ୍ରବୃତ୍ତି ଜଙ୍ଗଲର ଯେ କୌଣସି ପଶୁ ଅପେକ୍ଷା ଶ୍ରେୟସ୍କର ।

ବାଘ ଆଜି ଆମ ଦେଶର ଜାତୀୟ ପଶୁ ରୂପେ ସରକାରୀ ସ୍ୱୀକୃତି ଲାଭ କରିଛି, ହେଲେ ବାଘ ଆମ ଦେଶର ବାସିନ୍ଦା ନୁହେଁ । ବିଲେଇ ଜାତୀୟ ଏହି ଯାଯାବର ପଶୁଟିର ସର୍ବଶେଷ ଆବାସ ଭାରତୀୟ ଉପମହାଦେଶ । ଆର୍ଟିକ ବଳୟ ନିକଟସ୍ଥ ନିଉସାଇବେରିଆ ଅଞ୍ଚଳରୁ ମିଳିଥିବା ଜୀବାଶ୍ମରୁ ଜଣାପଡ଼େ ଯେ ଆଧୁନିକ ବାଘର ପୂର୍ବପୁରୁଷ ଥିଲେ ଅତିକାୟ ଦୀର୍ଘ ଓ ବକ୍ର ଦାନ୍ତଧାରୀ । ସେମାନଙ୍କର ବିଚରଣ ଭୂମୀ ଥିଲା ଏସିଆ ମହାଦେଶର ଉତ୍ତରରେ ଅବସ୍ଥିତ ଅଧୁନା ସାଇବେରିଆ ନିକଟବର୍ତ୍ତୀ ଅଞ୍ଚଳ । ସେ ସମୟରେ ସାଇବେରିଆ ଅଞ୍ଚଳ ଘନ ଜଙ୍ଗଲରେ ପରିପୂର୍ଣ୍ଣ ଥିଲା ଓ ବାଘର ଖାଦ୍ୟ ଉପଯୋଗୀ ଛୋଟ ବଡ଼ ଅନେକ ତୃଣଭୋଜୀ ପ୍ରାଣୀ ସେଇ ଜଙ୍ଗଲରେ ବିଚରଣ କରୁଥିଲେ । କ୍ରମେ ସେ ଅଞ୍ଚଳର ପରିବେଶରେ ହେଲା ପରିବର୍ତ୍ତନ । କ୍ରମବର୍ଦ୍ଧମାନ ତୁଷାରପାତ ଫଳରେ ସେ ଅଞ୍ଚଳର ତୃଣଭୋଜୀ ପ୍ରାଣୀମାନେ ସେ ସ୍ଥାନ ତ୍ୟାଗ କରି ଅନ୍ୟ ସ୍ଥାନକୁ ପଳେଇଲେ । ଖାଦ୍ୟ ସାଙ୍ଗକୁ ଖାଦକ ମଧ ସେ ସ୍ଥାନ ତ୍ୟାଗ କଲେ । ବାଘ ଉତ୍ତରାଞ୍ଚଳ ତ୍ୟାଗ କରି ମଧ ଓ ପୂର୍ବ ଏସିଆର ବିଭିନ୍ନ ଅଞ୍ଚଳକୁ ପଳେଇଲେ ।

ଭାରତବର୍ଷକୁ ବାଘର ଅନୁପ୍ରବେଶ ଆନୁମାନିକ ଖ୍ରୀଷ୍ଟପୂର୍ବ ୫୦୦୦/୬୦୦୦ ବର୍ଷ ତଳେ ହୋଇଥିଲା । ଋକ୍ ବେଦରେ ବାଘର କୌଣସି ଉଲ୍ଲେଖ ନାହିଁ । ମାତ୍ର ଆର୍ଯ୍ୟ ସାହିତ୍ୟ ଗ୍ରନ୍ଥ, ଅଥର୍ବ ବେଦରେ ବାଘର ଉଲ୍ଲେଖ ଅଛି । ଭାରତୀୟ ଲୋକାଚାରରେ ବାଘର ଉପସ୍ଥିତି ତଥା ଦେବୀର ବାହନ ବା ମନ୍ଦିରର ଦ୍ୱାରପାଳ ରୂପେ ବାଘର ପ୍ରତିକୃତି ଋକ୍ ବେଦର ପରବର୍ତ୍ତୀ ଯୁଗରେ ହୋଇଛି ।

ବାଘର ପ୍ରଣୟ ଓ ପୂର୍ବରାଗ ବିଲେଇର ପ୍ରଣୟ ରିତୀ ସହ ପ୍ରାୟ ସମାନ । ତେବେ ବାଘର ପ୍ରେମାଳାପ ବିଲେଇ ପରି ଗୋପନୀୟ ବା ଏକାନ୍ତ ନୁହେଁ । ବାଘୁଣୀର (ସ୍ତ୍ରୀ ବାଘ) ସମୟ ହେଲେ, ସେ ବିକଟ ଗର୍ଜନ କରି ତାହା ଘୋଷଣା କରେ । ଯେତେଦିନ ଯାଏ ଘୋଷଣାର ମାତ୍ରା ବଢ଼ିବାକୁ ଲାଗେ । ଏହି ସମୟରେ ବାଘୁଣୀ ଦେହରୁ ଏକ ପ୍ରକାରର ଗନ୍ଧ ବାହାରେ ଓ ସେଇ ଗନ୍ଧ ପ୍ରାୟ ସାତ ଆଠଦିନ ପର୍ଯ୍ୟନ୍ତ ରହିଥାଏ । ବାଘୁଣୀର ଡାକ ତା' ସାଙ୍ଗକୁ ତା' ଦେହର ଗନ୍ଧ ଶୁଙ୍ଘି ନିକଟସ୍ଥ ବାଘ, ବାଘୁଣୀର ଡାକର ଉତ୍ତର ଦିଏ । କ୍ରମେ ବାଘୁଣୀ ନିକଟକୁ ଦୁଇ ବା ତତୋଽଧିକ ବାଘ ଆସି ପହଞ୍ଚନ୍ତି । ପ୍ରଣୟ ସ୍ଥାନରେ ପହଞ୍ଚିବା ପରେ ଗୋଟିଏ ବାଘ ଅନ୍ୟ ବାଘକୁ ଦେଖି ହୁଙ୍କାର ଦିଏ ଓ ଧିରେ ଧିରେ ପାଆଚାରୀ କରେ । ଅନ୍ୟ ବାଘଟି ମଧ ତା'ର ଉତ୍ତରରେ ହୁଙ୍କାର ଦିଏ ଓ ପାଆଚାରୀ କରେ । ଅଳ୍ପ ସମୟ ଭିତରେ ଗଁ ଗଁ ଘଡ଼ ଘଡ଼ ଆଦି ଶବ୍ଦରେ ଦୁଇ ବାଘ

ପରସ୍ପରକୁ ଅଭିବାଦନ କରନ୍ତି । ଏହି ଅଭିବାଦନ ଏହା ପରେ ଦ୍ୱନ୍ଦ ଯୁଦ୍ଧରେ ପରିବର୍ତ୍ତିତ ହୁଏ । ଦ୍ୱନ୍ଦ ଯୁଦ୍ଧ ବେଳେ ନଖ ଓ ଦାନ୍ତର ଆଘାତରେ ଉଭୟ କ୍ଷତ ବିକ୍ଷତ ହୋଇଯାଆନ୍ତି । ବେଳେ ବେଳେ ତିନି ଚାରି ଦିନ ଲଗାତାର ଏହି ଲଢ଼େଇ ଚାଲେ । ଏଠାରେ ଲକ୍ଷଣୀୟ- ଯଦିଓ ଏହି ଦ୍ୱନ୍ଦ ଯୁଦ୍ଧରେ ଜଣେ ଅପରକୁ କ୍ଷତ ବିକ୍ଷତ କରିଦିଏ କିନ୍ତୁ କେବେହେଲେ ଜୀବନରେ ମାରି ଦିଏ ନାହିଁ । ଯେଉଁ ମୁହୂର୍ତ୍ତରେ ପ୍ରତିଦ୍ୱନ୍ଦୀ ମାଟିରେ ପିଠି ଦେଇ ଗୋଡ଼ ଚାରିଟାକୁ ଉପରକୁ ଟେକିଦିଏ ସେଇଠୁ ସେ ପରାଜୟ ମାନି ନିଏ ଓ ଅନ୍ୟ ପ୍ରତିଦ୍ୱନ୍ଦୀ ତାହାକୁ ଆଉ ପୀଡ଼ା ନ ଦେଇ ଛାଡ଼ିଦିଏ ।

ଯାହା ପାଇଁ ଏଇ ଯୁଦ୍ଧ ସେଇ ଦୟିତା ଦ୍ୱିରଥ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ସବୁ ଦେଖୁଥାଏ । ବାତିଲ କରିବା ଲଢ଼େଇ ଶେଷ ହୋଇଗଲେ ବିଜୟୀ ବାଘ ପ୍ରଣୟୀ ପ୍ରତି ଦୃଷ୍ଟି ଦିଏ ଓ ପ୍ରଣୟୀ ସହ ମିଛି ମିଛିକା ଲଢ଼େଇ କରେ । ଏହି ଖେଳ ଶେଷ ହୋଇଗଲେ ବାଘୁଣୀ ନିଜର ଲମ୍ୱା ନିଶ ଶହ ଲଗେଇ ଦିଏ । ଉତ୍ତରରେ ବାଘ ଯଦି ନରମ ସ୍ୱରରେ ଘଡ଼ ଘଡ଼ କରେ ତେବେ ବାଘୁଣୀ ମାଟିରେ ପିଠି ଦେଇ ଚିତ ହୋଇ ଶୋଇପଡ଼େ ଓ ଗୋଡ଼କୁ ଶୂନ୍ୟକୁ ଟେକି ଆନ୍ଦୋଳିତ କରେ । ବାଘୁଣୀ ଏହି ବ୍ୟବହାରରେ ବାଘ କିନ୍ତୁ ପୂର୍ବ ପରି ଗଁ ଗଁ ଶବ୍ଦ କରି ପ୍ରଣୟୀକୁ ଅନେଇ ରୁହେ । କିଛି ସମୟ ଉତ୍ତାରୁ ବାଘୁଣୀ ଠିଆ ହୁଏ ଓ ଆଗଗୋଡ଼ ଦୁଇଟିକୁ ଭାଙ୍ଗି ପଛ ଗୋଡ଼ ସାହାଯ୍ୟରେ ପିଠିଟାକୁ ଟେକି ଧରେ । ବାଘୁଣୀର ଏହି ଅବସ୍ଥା ଦେଖିଲେ ବାଘ ଗର୍ଜନ କରି ତା' ପିଠି ଉପରେ ଚଢ଼ି ବସେ ଓ ବାଘୁଣୀ ବେକର ଉପର ପାର୍ଶ୍ୱର ନରମ ଚମଡ଼ାକୁ କାମୁଡ଼ି ଦିଏ । ଏହି ପ୍ରେମ ଦୃଶ୍ୟର ସ୍ଥାୟୀତ୍ୱ ପନ୍ଦରରୁ କୋଡ଼ିଏ ସେକେଣ୍ଡ । ପ୍ରତିଦିନ ବହୁଥର ଏହି ଦୃଶ୍ୟ ଅଭିନୀତ ହୁଏ ଓ ସମଗ୍ର ଅନୁଷ୍ଠାନ ପାଞ୍ଚ ଛଅ ଦିନ ପର୍ଯ୍ୟନ୍ତ ଚାଲେ । ଅନୁଷ୍ଠାନ ଶେଷରେ ଦୁଇ ଅଭିନେତା ଓ ଅଭିନେତ୍ରୀ କ୍ଷତ ବିକ୍ଷତ ଶରୀର ନେଇ ଶୀର୍ଣ୍ଣ ଅବସ୍ଥାରେ ମଞ୍ଚରୁ ପ୍ରସ୍ଥାନ କରନ୍ତି ।

ପଶୁ କୁଳରେ ସାଧାରଣତଃ ବର୍ଷ ବା ମାସର ଏକ ନିର୍ଦ୍ଦିଷ୍ଟ ସମୟରେ ସ୍ତ୍ରୀ ଗର୍ଭଧାରଣ କରିଥାଏ । ତେବେ ବାଘ କୁଳରେ ଏପରି କୌଣସି ନିର୍ଦ୍ଦିଷ୍ଟ ସମୟ ନାହିଁ । ବାଘୁଣୀର ସମୟ ବର୍ଷ ତମାମ ୪୫ରୁ ୫୫ ଦିନ ବ୍ୟବଧାନରେ ହୁଏ । କିନ୍ତୁ ଯେତେବେଳେ ବାଘୁଣୀ ତା'ର ପିଲାମାନଙ୍କ ସହିତ ରୁହେ ସମୟ ହେବା ବିଷୟଟି ବନ୍ଦ ରୁହେ । ଯଦି ଦୁର୍ଘଟଣାରୁ ପିଲା ନଷ୍ଟ ହୋଇଯାଆନ୍ତି ସେତେବେଳେ ସେ ପୁଣି ଗର୍ଭଧାରଣ କରିବା ପାଇଁ ସକ୍ଷମ ହୁଏ । ବାଘୁଣୀର ଗର୍ଭଧାରଣ ସମୟ ୧୦୦ରୁ ୧୧୦ ଦିନ । ଯଦିଓ ବର୍ଷତମାମ ବାଘୁଣୀ ଗର୍ଭଧାରଣ ପାଇଁ ସକ୍ଷମ, ତେବେ ଦେଖାଯାଇଛି ବାଘର ଗର୍ଭଧାରଣ ସାଧାରଣତଃ ଡିସେମ୍ବରରୁ ଫେବୃୟାରୀ ମଧ୍ୟରେ ହୋଇଥାଏ । ଫଳରେ ମାର୍ଚ୍ଚରୁ ମଇ ମାସ ଭିତରେ ବାଘୁଣୀ ପ୍ରସବ କରିଥାଏ । ବାଘୁଣୀର ଏନ୍ତୁଡ଼ିଶାଳଟି ଅତି ଗୋପନୀୟ ଓ ନିଭୃତ । ଗୁହା କଣରେ ବା ପଥର ଆଢୁଆଳରେ ବାଘୁଣୀ ଏକାଥରକେ ୩ରୁ ୪ଟି ପିଲା ପ୍ରସବ କରେ । ଜନ୍ମ ପରେ ପିଲାମାନଙ୍କ ଆଖି ଫିଟି ନଥାଏ । ୯/୧୦ ଦିନ ପର୍ଯ୍ୟନ୍ତ ପିଲାଙ୍କ ଏହି ଅନ୍ଧତ୍ୱ ଥାଏ । ଆଖି ଫିଟିବା ପରେ ସଙ୍ଗେ ସଙ୍ଗେ ସେମାନେ ଆଲୁଅକୁ ଅନେଇ ପାରନ୍ତି ନାହିଁ । ତେଣୁ ସେମାନେ ଅନ୍ଧାରୁଆ ସ୍ଥାନମାନଙ୍କରେ ଯାକିଯୁକି ହୋଇ ଶୋଇଥାଆନ୍ତି । ଏହି ସମୟରେ ବିଲେଇ ଛୁଆକୁ ତା'ର ମା' ଯେପରି ବେକ ଉପରି ଭାଗକୁ କାମୁଡ଼ି ଗୋଟାଏ ଯାଗାରୁ ଅନ୍ୟ ଯାଗାକୁ ନେଇଯାଏ, ବାଘୁଣୀ ମଧ୍ୟ ସେଇପରି ତା'ର ଛୁଆଙ୍କୁ ଗୋଟିଏ ସ୍ଥାନରୁ ଅନ୍ୟ

ସ୍ଥାନକୁ ସ୍ଥାନାନ୍ତରିତ କରେ । ସମ୍ଭବତଃ ନିରାପତ୍ତା ପାଇଁ ବାଘୁଣୀ ଏହିପରି ବ୍ୟବହାର କରିଥାଏ । ଜନ୍ମ ହେବାର ପରେ ପ୍ରଥମ କେଇଟା ଦିନ ମା' ସଦାବେଳେ ପିଲାଙ୍କ ସାଙ୍ଗରେ ଥାଏ । ପରେ ସେ ପିଲାଙ୍କୁ ଛାଡ଼ି ଶୀକାରକୁ ଯାଏ । ପିଲାମାନେ ସମ୍ପୂର୍ଣ୍ଣ ରୂପେ କ୍ଷୀର ଛାଡ଼ିବା ପୂର୍ବରୁ ମା' ଆଣିଥିବା ହାଡ଼ରୁ ମାଂସ ଚାଟି କରି ଖାଆନ୍ତି । ଏହି ସମୟରେ ମା' ମଧ୍ୟ ଗଳାଧଃକରଣ କରିଥିବା କିଛି ମାଂସ ଉଦ୍‌ଗାର କରିଦିଏ ଓ ପିଲାମାନେ ତାହାକୁ ଖାଆନ୍ତି । ଏହି ଉପାୟରେ ଛୁଆଙ୍କୁ ଖୋଇବା ଦ୍ୱାରା ମାଂସ ପ୍ରଥମେ ମା'ର ପାକସ୍ଥଳୀରେ କିଛିଟା ଜୀର୍ଣ୍ଣ ହୋଇଯାଏ । ପରେ ପିଲାଙ୍କୁ ହଜମ କରିବାରେ ତାହା ସହଜ ହୁଏ ।

ବାଘ ଛୁଆଙ୍କ ଶୀକାର କରିବା ଓ ଗୋପନରେ ଶିକାରକୁ ଅନୁସରଣ କରିବାର ପ୍ରଥମ ଶିକ୍ଷା ମା'ଠାରୁ ହୋଇଥାଏ । ବଡ଼ ହେଲେ ପ୍ରଥମ ଶୀକାର ସେମାନେ ମା' ସହ କରନ୍ତି । ଦୁଇ ତିନିବର୍ଷ ପରେ ସେମାନେ ନିଜେ ଶିକାର କରିବାକୁ ସକ୍ଷମ ହୁଅନ୍ତି ।

ଆଜି ମଣିଷ ବିବର୍ତ୍ତନ ସିଡ଼ିରେ ସବୁଠାରୁ ଉପର ପାହାଚରେ ପହଞ୍ଚିଛି । ଆଜି ପୃଥିବୀରେ ସେ ଏକମାତ୍ର ଅଧିପତି, ପୃଥିବୀର ଅନ୍ୟ ସମସ୍ତ ପ୍ରାଣୀକୁ ଜୀବନସଂଗ୍ରାମରେ ପଛରେ ପକେଇ ସେ ପ୍ରତିଦିନ ଗୋଟାଏ ପାହୁଣ୍ଡ ଆଗକୁ ବଢ଼ୁଛି । ଗୋଟିଏ ପ୍ରଜନ୍ମରେ ଆହରଣ କରିଥିବା ଜ୍ଞାନ ପରବର୍ତ୍ତୀ ପ୍ରଜନ୍ମକୁ ବଢ଼େଇ ପ୍ରତି ପ୍ରଜନ୍ମରେ ସେ ତା'ର ଜ୍ଞାନର ପରିଧିକୁ ପ୍ରସସ୍ତ କରୁଛି । ମଣିଷହିଁ ଏକମାତ୍ର ପ୍ରାଣୀ ଯେଉଁଠି ସ୍ତ୍ରୀ ପୁରୁଷର ଆକର୍ଷଣ କେବଳ ଯୌନତା ଉପରେ ଆଧାରିତ ନୁହେଁ, ସ୍ତ୍ରୀ ପୁରୁଷର ସମ୍ପର୍କ ଠିଆହୋଇ ପରସ୍ପର ପ୍ରତି ବିଶ୍ୱାସ, ପରସ୍ପର ପ୍ରତି ସମ୍ମାନବୋଧରୁ । ମଣିଷର ଏହି ଚିନ୍ତାବେଗ ରହିଛି ବୋଲି ଆଜି ସେ ହୋଇଛି 'ମଣିଷ' ।



ବାଘ ଓ ବାଘୁଣୀ ମିଳନ ପରେ

# ଯୌନତା ଓ ନୈତିକତା

''ମିଳନର ଛନ୍ଦ'' ବହିଟିର ପାଣ୍ଡୁଲିପି ପଢ଼ିଲା ପରେ ମୋର ଜଣେ ସହକର୍ମୀ ପ୍ରଶ୍ନ କରିଥିଲେ, 'ଏ ଧରଣର ବହିର ଆବଶ୍ୟକତା କ'ଣ ସତରେ ଅଛି ?' ଉତ୍ତରରେ ବନ୍ଧୁଙ୍କୁ କହିଥିଲି, ଯୌନତା ଓ ଯୌନ ସମ୍ବନ୍ଧୀୟ ବହିର ଆବଶ୍ୟକତା ସାଧାରଣ ପାଠକମାନଙ୍କ ପାଇଁ ହୁଏତ ନାହିଁ,



ରଁଦାଙ୍କ ମାର୍ବଲ ଖୋଦିତ ପୁରୁଷ ଓ ନାରୀ

କିନ୍ତୁ ଜୀବବିଜ୍ଞାନୀ, ମନସ୍ତତ୍ତ୍ୱବିଦ୍, ସମାଜବିଜ୍ଞାନୀ, ଅନୁସନ୍ଧିତ୍ସୁ ପାଠକ ପାଇଁ ଏ ଧରଣର ବହି ଚିନ୍ତା କରିବାର କିଛି ଖୋରାକ ନିଶ୍ଚେ ଦେବ । ବିଂଶ ଶତାବ୍ଦୀ ସରିଲାଣି ବିଗତ ଶତାବ୍ଦୀରେ ବିଜ୍ଞାନ ଆମକୁ ଅନେକ ସୁଖର ସାମଗ୍ରୀ ଦେଇଛି, ମଣିଷ ଚନ୍ଦ୍ରପୃଷ୍ଠରେ ଓହ୍ଲେଇଛି, କ୍ଲୋନ୍ ମେଣ୍ଢା ଡଲିର ଜନ୍ମ ହୋଇଛି, ଆଣ୍ଟିବାୟୋଟିକ୍ ଆଦି ଔଷଧର ଆବିଷ୍କାର ଚିକିତ୍ସାବିଜ୍ଞାନରେ ନୂତନ ଦିଗନ୍ତ ଆଣିଛି, ଇଣ୍ଟରନେଟ ସହାୟତାରେ ଜ୍ଞାନର ପରିଧି ଆହୁରି ବିସ୍ତୃତ ଓ ବ୍ୟାପକ ହୋଇଛି ହେଲେ ମନରେ ସନ୍ଦେହ ହୁଏ ମଣିଷ କ'ଣ ଏ ଯାଏଁ ତା'ର ଯୌନ ଆବେଦନର ଊର୍ଦ୍ଧ୍ୱକୁ ଯାଇ ପାରିଛି । ମଣିଷ ଯେତେ ସଭ୍ୟ (?)ହେଉଛି ସେ ତା'ର ଯୌନ ଆବେଦନର ଊର୍ଦ୍ଧ୍ୱକୁ ଯିବା ପରିବର୍ତ୍ତେ ସେ ତା'ର ଦାସ ହୋଇଯାଉଛି ।

ଆଜି ସମାଜର କଳା, ସଂସ୍କୃତି, ଧର୍ମ, ରାଜନୀତି ସବୁଠି 'ଯୌନତା'ର ଏକ ମୁଖ୍ୟ ଭୂମିକା ରହୁଛି । ପୋଲିସ ଖାତାରେ ଯୌନ ଅପରାଧ ସଂଖ୍ୟା ଅନ୍ୟ ଅପରାଧଠାରୁ ଯଥେଷ୍ଟ ଅଧିକ । ସମାଜ ଆଜି ଯୌନତାକୁ ଅସ୍ୱୀକାର କରିବ କ'ଣ ଯୌନତା କବଳରେ 'ସମାଜ' ଆଜି ଅର୍ଣନିଃଶ୍ୱାସୀ ।

ସମାଜ ଯେତେ ଉନ୍ନତ ହେଉଛି, ସେତିକି ନୂତନ ନିୟମ ନୂତନ ଅନୁଶାସନର ବେଡ଼ିରେ ମଣିଷ ନିଜକୁ ବାନ୍ଧିବାକୁ ଚେଷ୍ଟା କରୁଛି । ହେଲେ ଯୌନତା ସତେ ଅବା କିମ୍ବଦନ୍ତୀର 'ରକ୍ତବୀଜ' । ମଣିଷ ଯେତେ ତାକୁ ନଷ୍ଟ କରୁଛି ଯୌନତା ଅଧିକ ବିକ୍ରମରେ ମଣିଷକୁ ଜାବୁଡ଼ି ଧରୁଛି । ମନରେ ପ୍ରଶ୍ନ ହୁଏ ଗୁହାମାନବ ଯୌନତା ସମ୍ପର୍କରେ ଉଦାର ଥିଲା ନା ସ୍ପର୍ଶକାତର ଥିଲା । ଏ ସମ୍ପର୍କରେ ନୃତତ୍ତ୍ୱବିତ୍‌ମାନେ ବିଶେଷ କିଛି ଜାଣନ୍ତି ନାହିଁ, ଯଦିଓ କେତେକ ସ୍ଥାନରେ ମିଳିଥିବା ଗୁହାଚିତ୍ର ମାନବର ମିଳନର ଦୃଶ୍ୟ, ସନ୍ତାନ ଜନ୍ମର ଚିତ୍ର ଆଦି ଦେଖିବାକୁ ମିଳେ ଯେଉଁଥିରୁ ଗୁହାମାନଙ୍କର ବିଜ୍ଞାନମନସ୍କ ମନର ପରିଚୟ ଦିଏ ।

କେତେକ ନୃତତ୍ତ୍ୱବିତ୍‌ମାନେ ମନେ ମନେ କହନ୍ତି ଗୁହାମାନବ ଏକ ଦାରପ୍ରିୟ ଥିଲା ଏବଂ ସେମାନଙ୍କ ଯୌନ ଜୀବନ ନିର୍ଦ୍ଦିଷ୍ଟ ନିୟମର ସୀମାରେଖା ଭିତରେ ଆବଦ୍ଧ ଥିଲା । ମନରେ ପ୍ରଶ୍ନ ହୁଏ ମଣିଷର ଯୌନ ଜୀବନରେ ଉଚ୍ଛୃଙ୍ଖଳତା ଓ ବିକୃତି ଆସିଲା କେବେଠୁ ? ଏହା ପରେ ପ୍ରଶ୍ନ ଯୌନ ଜୀବନରେ ବିକୃତି କ'ଣ ? ଏବେ ମଧ୍ୟ କେତେକ ସମ୍ପ୍ରଦାୟରେ ପତ୍ନୀ ବଦଳ ବା ସମକାମୀତା ସମାଜରେ ଗ୍ରହଣୀୟ । ତେଣୁ ଗୋଟିଏ ସମ୍ପ୍ରଦାୟ ପାଇଁ ଯାହା ବିକୃତି ଅନ୍ୟ ସମ୍ପ୍ରଦାୟ ପାଇଁ ତାହା ବିକୃତି ନୁହେଁ ।



'ମିଳନର ଛନ୍ଦ' ଡଃ. ଘୋଷଙ୍କ ବିଜ୍ଞାନଭିତ୍ତିକ ଚତୁର୍ଥ ପୁସ୍ତକ । ପ୍ରାଣୀମାନଙ୍କର ବିସ୍ମୟକର ଯୌନ ଜୀବନ, ରହସ୍ୟମୟ ପ୍ରଜନନ କ୍ରିୟା ଓ ବୈଚିତ୍ର୍ୟମୟ ସନ୍ତାନ ପାଳନ ସମ୍ବନ୍ଧୀୟ ତଥ୍ୟରେ ପୁସ୍ତକଟିର ପ୍ରତିଟି ଫର୍ଦ୍ଦ ଚିତ୍ରିତ । ଶୁଷ୍କ ନୀରସ ବୈଜ୍ଞାନିକ ତଥ୍ୟ ଏଥିରେ ଏପରି ରୂପାୟିତ ଯେ' ଏହା ଡଃ. ଘୋଷଙ୍କ ସିଦ୍ଧହସ୍ତର ପରିଚାୟକ ।

ପୂର୍ବରୁ 'ସମ୍ବାଦ' ଓ 'ଅମୃତାୟନ'ରେ ଧାରାବାହିକ ଭାବେ ପ୍ରକାଶ ପାଇ ପ୍ରଚୁର ପାଠକୀୟ ପ୍ରଶସ୍ତିରେ ଗୁଞ୍ଜରିତ 'ମିଳନର ଛନ୍ଦ'ର ଏ ଗ୍ରନ୍ଥରୂପ ଲୋକପ୍ରିୟ ବିଜ୍ଞାନ ପୁସ୍ତକ କ୍ଷେତ୍ରରେ ଏକ ମାଇଲଖୁଣ୍ଟ ।

ଶରୀର ରାଇଜର ଗୁମର କଥା, ନିଜେ ପରୀକ୍ଷା କରି ଦେଖ ଓ କହ ବିଜ୍ଞାନ ଗଳ୍ପ ଡଃ. ଘୋଷଙ୍କ ଅନ୍ୟାନ୍ୟ ପୁସ୍ତକ । ଦିଲ୍ଲୀ ବିଶ୍ୱବିଦ୍ୟାଳୟରୁ ସାଇଟୋ ଜେନେଟିକ୍ସରେ ପି.ଏଚ.ଡି ଡିଗ୍ରୀ ପ୍ରାପ୍ତ ଡଃ. ଘୋଷ ଏବେ ଶିକ୍ଷା ବିଭାଗରେ ପ୍ରାଣୀ ବିଜ୍ଞାନ ପ୍ରାଧ୍ୟାପକ ।